# ଗ୍ରନ୍ଥ ପ୍ରବେଶ

ମଧୁପୁର ଜିଲ୍ଲାର ଗର୍ଣ୍ଣି ଶାସନ ନିବାସୀ ପଣ୍ଡିତ ଶ୍ରୀ ମାଧବ ଚନ୍ଦ୍ର ମିଶ୍ର ଶର୍ମା ଏହି ଭକ୍ତି କଳ୍ପଲତା କାବ୍ୟର ଲେଖକ । ଏହା ତାଙ୍କ ପ୍ରଣୀତ କାବ୍ୟ କଳ୍ପଦ୍ରୁମ ଗ୍ରନ୍ଥାବଳୀର ତୃତୀୟ କାବ୍ୟ, ଏଥିରେ ବର୍ଣ୍ଣିତ ବିଷୟ ସୁଦାମାଙ୍କର ଦାରିଦ୍ର୍ୟ ଭଞ୍ଜନ । ସୁଦାମା ଶ୍ରୀକୃଷ୍ଣଙ୍କର ସହପାଠୀ କିନ୍ତୁ ସେ ଜଣେ ନିଷ୍କାମ ଭକ୍ତ । ଦାରିଦ୍ର୍ୟର କଠୋର ଯନ୍ତ୍ରଣାରେ ପ୍ରପୀଡ଼ିତ ହୋଇ ସୁଦ୍ଧା ସେ ସର୍ବଦା କୃଷ୍ଣ ଗୁଣଗାନ ଓ ନାମକୀର୍ତ୍ତନ କରି ପରମ ସୁଖରେ କାଳାତିପାତ କରୁଥିଲେ । କିନ୍ତୁ ତାଙ୍କର ସ୍ତ୍ରୀ ସୁମତି ଦାରିଦ୍ର୍ୟ ଯନ୍ତ୍ରଣା ସହିବାକୁ ଅକ୍ଷମ ହୋଇ ତାଙ୍କୁ ଶ୍ରୀକୃଷ୍ଣଙ୍କ ସହିତ ଦେଖା କରି କିଛି ଅର୍ଥ ଯାଚନା କରିବାକୁ ସେ ଧନ ଲାଳସାରେ ଦ୍ୱାରକା ଯିବାକୁ ଯେତେ ଆଗ୍ରହ ପ୍ରକାଶ ନ କରି ଥିଲେ ତଦପେକ୍ଷା "ହେଉ ତେବେ ସଖା ଦର୍ଶନେ ମୁହିଁ ଯିବି ନିକର, ମଣିରୂପେ ଶିରେ ଭୂଷଣ କରି ବାଣୀ ତୋହର" ବୋଲି କହି ସଖା ଦର୍ଶନ ଲାଗି ଦ୍ୱାରକା ବାହାରିଲେ । ସେଠାରେ ମଧ୍ୟ ଶ୍ରୀକୃଷ୍ଣଙ୍କୁ କିଛି ମାଗିଲେ ନାହିଁ ଏବଂ ଘରକୁ ଆସି ଘରର ଅଦ୍ଭୁତ ପରିବର୍ତ୍ତନ ଦେଖି ବିଷୟାସକ୍ତ ହୋଇ ପଡ଼ିବେ ବୋଲି ବ୍ୟାକୁଳ ହୋଇ ପଡ଼ିଲେ । ଏହିଠାରେହିଁ ତାଙ୍କର ମହତ୍ତ୍ୱ ଏବଂ ସେ ମହତ୍ତ୍ୱର ପରିଦର୍ଶନ ଏହି କ୍ଷୁଦ୍ର କାବ୍ୟ ଖଣ୍ଡିକର ଉପଜୀବ୍ୟ ବିଷୟ । କବି ଉକ୍ତ ଉପଜୀବ୍ୟ ବିଷୟଟିର ଚିତ୍ର ଦେଖାଇବାରେ ଯେତିକି ଦୂର କ୍ଷମ ହୋଇଅଛନ୍ତି ତାହା ପାଠକ ବର୍ଗ ବିଚାର କରିବେ । ଇତି—

ଭୋଗ୍ରାଇ — ଶ୍ରୀ ନାରାୟଣ ତ୍ରିପାଠୀ
ତା ୫।୩।୪୭ — ହେଡ଼ମାଷ୍ଟର ଭୋଗ୍ରାଇ ମି: ଇ: ସ୍କୁଲ

# ମୁଖବନ୍ଧ

'କର୍ମ ଫଳରେ ପ୍ରାଣୀ ଲଭେ ରତନ
କର୍ମ ହିଁ ଧନ ଭୋଗ ସୁଖ ସଦନ ।

କର୍ମ ଫଳରେ ପ୍ରାଣୀ ରତ୍ନ ଲାଭ କରେ, ଏହାହିଁ ପୂର୍ବ ପ୍ରସିଦ୍ଧ । ଏଠାରେ କର୍ମ ଶବ୍ଦର ଅର୍ଥ ଯତ୍ ନିଯୁକ୍ତେ ତତ୍ କର୍ମ । ଉକ୍ତ ପ୍ରମାଣରୁ ପ୍ରକାଶ ପାଉଛି ମୋର ଏ ଡାକ୍ତର ବ୍ୟବସାୟଟି ଗୋଟିଏ କର୍ମ । ଏହା ଫଳରେ ଅନେକ ସାଧୁ ସଜ୍ଜନ ଗୁଣିଜନମାନଙ୍କ ସହିତ ଆତ୍ମୀୟତା ଘଟିଛି ।

ଏହାର ପ୍ରତ୍ୟକ୍ଷ ପ୍ରମାଣ ମଧୁପୁରାନ୍ତର୍ଗତ କଇଁ ଶାସନସ୍ଥ ପଣ୍ଡିତ ଶ୍ରୀ ମାଧବଚନ୍ଦ୍ର ମିଶ୍ରଙ୍କର ଶରୀର ଅସୁସ୍ଥତା ହେତୁ ସେ ଔଷଧ ସେବନାର୍ଥେ ଅସ୍ମର ଔଷଧାଳୟକୁ ଆଗମନ କରିଥିଲେ । ଅଳ୍ପ କେତିଦିନ ଔଷଧ ସେବନ କରି ସାମାନ୍ୟ ଆରୋଗ୍ୟ ଲାଭ କରିବାରୁ, ଔଷଧ ମୂଲ୍ୟର ଭାର ବହନ କରିବାକୁ ଆପଣାକୁ ଅକ୍ଷମ ମନେ କରି ଆଉ ଔଷଧ ସେବନ କଲେ ନାହିଁ । ଏକ ସପ୍ତାହ ଔଷଧାଳୟକୁ ନ ଆସିବାରୁ, ତାଙ୍କ ସହିତ ଆସୁଥିବା ଲୋକଟି ଠାରୁ ପଣ୍ଡିତଙ୍କର ସମ୍ପୂର୍ଣ୍ଣ ମନୋଭାବ ପଚାରି ବୁଝିପାରି ମିଶ୍ର ମହାଶୟଙ୍କୁ ଡକାଇ ତାଙ୍କର ଶରୀର ସୁସ୍ଥ ବିଷୟ ପଚାରିବାରୁ ସେ ବିଷାଦପୂର୍ଣ୍ଣ ବଦନରେ କହିଲେ "ମହାଶୟ ! ପ୍ରାୟ ଚାରିବର୍ଷ ହେଲା ଚାତୁର୍ଥିକଜ୍ୱର ଭୋଗ କଲାପରେ ଗତ ଆଷାଢ଼ମାସ ସୁକନ୍ଦା ଅନ୍ତର୍ଗତ ନନ୍ଦକିଶୋରପୁର ଶାସନସ୍ଥ ମୋର ଜ୍ଞାତି ଗାୟକ ଶ୍ରୀମାନ୍ କ୍ଷେତ୍ରମୋହନ ମିଶ୍ରଙ୍କର ଗୃହରେ ମୋତେ ଭୀଷଣ ସନ୍ନିପାତ ରୋଗ ଭୋଗ କରିବାକୁ ପଡ଼ିଥିଲା । ମୋର ମୃତ୍ୟୁପଥୋନ୍ମୁଖୀ ଜୀବନକୁ ପୂର୍ବୋକ୍ତ ଜ୍ଞାତିର ପିତୃବ୍ୟ ଶ୍ରୀଯୁକ୍ତ ଗଣେଶ୍ୱର ମିଶ୍ରଙ୍କର ଅମିତ ଅର୍ଥବ୍ୟୟ ଓ ଅନନ୍ୟ ସେବା, ଏବଂ ମୋର ଆତ୍ମୀୟ ଗୋଢ଼ଜ

ପୁର ନିବାସୀ କବିରାଜ ଶ୍ରୀ ଦୋଳଗୋବିନ୍ଦ ସାହୁଙ୍କର ଅଳ୍ପ ଫଳପ୍ରଦ ଔଷଧ ରକ୍ଷା କରିଅଛୁ" ଏହା କହି ନିରୁତ୍ତର ହେଲେ ।

ତହୁଁ ମୁଁ କହିଲି "ଅର୍ଜ୍ଜି କରୁଛି ଔଷଧ ସେବନ କରନ୍ତୁ ଆପଣ ପୂର୍ଣ୍ଣ ସ୍ୱାସ୍ଥ୍ୟଲାଭ କରିପାରିବେ । ମୋର ଏହି କଥା ଶୁଣିବା ପରେ ପଣ୍ଡିତେ କିଛିକ୍ଷଣ ନୀରବ ରହି ନିମ୍ନୋକ୍ତ କବିତାଟି ପାଠକଲେ ।

ରାଗ—ବଙ୍ଗଳାଶ୍ରୀ

ଅଭାବୁ ସକଳ ସୁଗୁଣ ସ୍ୱଭାବ ହୋଇଯାଏ ବିନାଶନ
ସ୍ୱଭାବ ନଷ୍ଟରୁ ସନ୍ତାପ-ତାମସୀ ନାଶେ ବିବେକ ଚେତନ ।
ବିବେକ ହୀନରୁ ଦିନ୍‌ଦିନ ହୀନ ପଥେ ଚାଲିଯାଏ ମନ
ହୀନପଥ ଗତ ହେବାରୁ ବିମ୍ବସ୍ୟୁ ବୈରାଗ୍ୟ ହୁଏ ଜନନ ।
ବୈରାଗ୍ୟରୁ ପ୍ରାଣୀ ହୁଏ କର୍ମହୀନ କର୍ମହୀନ୍ ଅକିଞ୍ଚନ
ଅକିଞ୍ଚନ୍ ମାନହାନି ଘଟିଅସେ ତହୁଁ ଦୁର୍ଗୁଣ ଘଟନ ।
ଦୁର୍ଗୁଣରୁ ବିଷ ହୁଅନ୍ତି ଆତ୍ମୀୟ ସେ ଦେଖନ୍ତି ବିଷ ପର
କ୍ରମେ କ୍ରମେ କଳହ ବାଦ ଦ୍ୱନ୍ଦ୍ୱ ବଢ଼ି କରାଏ ବାତୁଳ ନର ।
ଦ୍ୱନ୍ଦ୍ୱରୁ ଅଶାନ୍ତି ଚିନ୍ତା ବିଷାନଳ ଅନ୍ତରେ ଜଳି ଉଠଇ
ଚିନ୍ତା କୃଷ୍ଣ ଶଶୀ ସମ ଦିନ୍ ଦିନ ଶରୀର କ୍ଷୟ କରଇ ।
କ୍ଷୟରୁ ଦୁର୍ବଳ ହୋଇଲେ ଶରୀର ବ୍ୟାଧି ହୁଅନ୍ତି ଜନନ
ସଲିଳ ବିହୀନ ସରସୀ କୋଳରେ ଶୁଖିର କୁଳ ଯେସନ ।
ତହୁଁ ଜ୍ଞାନ ଧର୍ମ ବିବେକ ଚେତନ ନାଶ କରଇ ସକଳ
ବ୍ୟାଧି ବନାନଳ ଜଳିଉଠେ ସାନ୍ଧେ ନାହିଁ ଔଷଧ କମଳ ।
ବନ-ଧନମାନ ପୋଡ଼ିଗଲା ପର ଚାଲିଯାଏ ଏ ଜୀବନ
ବିପିନର ଅର୍ଦ୍ଧ ଭସ୍ମ ତରୁ ପର ବେ କରନ୍ତି ଦହନ ।

ଉକ୍ତ ଅଳ୍ପ ରଚିତ କବିତାରୁ ତାଙ୍କର ଅର୍ଥାଭାବ ବୁଝିପାରି ବିନା ମୂଲ୍ୟରେ ଔଷଧ ସେବନର ବ୍ୟବସ୍ଥା କରାଗଲା ।

ଅଧିକାଂଶ ସମୟରେ କବିଙ୍କର ଅଶ୍ରୁ କବିତା ଶ୍ରବଣରେ ଅମ୍ଭେମାନେ ମୁଗ୍ଧ ହେଉଁ । କିଛିଦିନ ପରେ ତାଙ୍କର ରଚିତ ମାଧବ ଚନ୍ଦ୍ର କାବ୍ୟ କଳ୍ପଦ୍ରୁମ ନାମକ ଗ୍ରନ୍ଥଟି ଆଣି ଦେଖାଇଲେ । ଅମ୍ଭର ସ୍ଥାନୀୟ କେତେକ ସାହିତ୍ୟାନୁରାଗୀ ବ୍ୟକ୍ତିମାନଙ୍କୁ ଉକ୍ତ ଗ୍ରନ୍ଥଟି ଏକ ସପ୍ତାହ ପର୍ଯ୍ୟନ୍ତ ପାଠକରି ଦେଖିଲୁ କବିଙ୍କର ମୁଖ୍ୟ ଉଦ୍ଦେଶ୍ୟ କାବ୍ୟଟିକୁ ସଂସ୍କୃତ ଭାଷାରେ ଲେଖିବାକୁ କାମନା ଥିଲା । ସଂସ୍କୃତ ଭାଷାରେ କାବ୍ୟ କଳ୍ପଦ୍ରୁମର ଦ୍ରୁମାକାର ରୂପକ ବର୍ଣ୍ଣନ, ମଙ୍ଗଳା ଚରଣ, ସର୍ଗ ଲକ୍ଷଣ ଓ ସର୍ଗ ପଣ୍ଡିତ ଲକ୍ଷଣ ପ୍ରଭୃତି ଏକଶତାଧିକ ଶ୍ଳୋକ ରଚନା କରିଥିବା ପରି ବୋଧ ହୁଏ କୌଣସି ବାଧା ବିଘ୍ନରେ ପଡିଥିବାରୁ ଭାଷା କାବ୍ୟ ଦିଗରେ ମନୋନିବେଶ କରି ଅଛନ୍ତି । ଭାଷା କାବ୍ୟ ଯଥା :—ଶ୍ରୀନୃସିଂହ ବିଳାସ, 'ସ' ଅନୁପ୍ରାସରେ ସତୀ ଚନ୍ଦ୍ରିକା, ଭକ୍ତି-କଳ୍ପଲତା, ରସମଞ୍ଜୁଷ, ମନୋଜମଞ୍ଜରୀ ପ୍ରଭୃତି କେତେକ ଖଣ୍ଡି କାବ୍ୟ ରଚନା କରି ଅଛନ୍ତି ।

କାବ୍ୟଟିର କିୟଦଂଶ ପାଠକରି ଦେଖିଲୁ ଯେ କବି ସଂସ୍କୃତ-ଭାଷା ପ୍ରାଚୀନ ନିୟମ ଭାଷା, ଏବଂ କାଳୋପଯୋଗୀ ଅଧୁନିକ ନାନା-ପ୍ରକାର ଛନ୍ଦ, ଯମକ, ଅନୁପ୍ରାସ, ନୂତନ ନୂତନ ଭାବାଳଂକାର, ଭାଷାର ଲାଳିତ୍ୟ, ଶ୍ଳେଷ, ରହସ୍ୟ, ପ୍ରକୃତି ଚିତ୍ର ନବରସର ଜୀବନ୍ତ ଚିତ୍ରାବଳୀ, ଚରିତ୍ର ଚିତ୍ରଣର ପରିପାଟି ଓ ନାନାବିଧ କଳ୍ପନା ବଳରେ ଗ୍ରନ୍ଥର କାବ୍ୟକଳ୍ପଦ୍ରୁମ ନାମଟିକୁ ସାର୍ଥକ କରିଅଛନ୍ତି ।

ଉକ୍ତ କବିଙ୍କର କାବ୍ୟ ମାଳାରୁ ଉଦାହରଣ ସ୍ୱରୂପ କିଛି ଲେଖିବାକୁ ଆଶା କରିଥିଲୁ । ଦେଖିଲୁ ପ୍ରତ୍ୟେକ କାବ୍ୟରୁ କିଛି କିଛି ଦେଖାଇ-ବାକୁ ଗଲେ କାବ୍ୟର କଳେବର ପୀନାକାର ଧାରଣ କରିବ; ତେଣୁ ଭୀତ ହୋଇ କବିଙ୍କର କ୍ଷୁଦ୍ର କବିତାବଳୀ ମନୋଜମଞ୍ଜରୀରୁ କେତୋଟି ପ୍ରମାଣ ସ୍ୱରୂପ ନିମ୍ନରେ ପ୍ରଦତ୍ତ ହେଲା । ପ୍ରଥମରେ ପ୍ରକୃତିର ଜୀବନ୍ତ ଚିତ୍ର—

ରାଗ—ରାମକେଶୀ

ମୋହ ନେବା ପାଇଁ ବସନ୍ତ ଅଙ୍ଗ ବାସନ୍ତୀ ଉଷା—
ଯୋଷାବର ହସି ଆସୁଛି ଧରି ମୋହନ ଭୂଷା ।
ଧଳପାଟ ରଙ୍ଗ ଶାଢ଼ୀ ତା କଟୀ ତଟେ ମଣ୍ଡନ
କରିଛି ପର୍ବତୀ ସୈରିନ୍ଧ୍ରୀ ହୋଇ ହରଷ ମନ ।
ସେ ଶୋଭା ବିଲୋକି ବାରୁଣୀ ଦିଗୁ ଧବଳ ଛବି
ମଳିନ ହୋଇଲା ଭାବି ଏ ଶୋଭା ଦେବତା-ପରି ।
ଉନ୍ନିଦ୍ର କୋକନଦ ଦଳ ଛଳ, ପଦ ତାହାର
ଚୁମ୍ବି ସୁନ୍ଦର ବନେ ହୋଇଲେ ଦେବ ଭୂଷଣ ହାର ।
ଗବାକ୍ଷେ ବିଲୋକି ନାଗରେ ହୋଇଗଲେ ତନ୍ମୟ
ବାଳା ପ୍ରେମ ଭୁଜ ବନ୍ଧନ ତୁଚ୍ଛ କଲେ ହୃଦୟ ।
ଉଷା ସୀମନ୍ତିନୀ ଲଭିବା ଆଶା କରି ପୋଷଣ
ସୂଚ୍ଛିତେ ଦେବେ ପ୍ରଭାତୁ କଲେ ବାଦ୍ୟ ଘୋଷଣ ।
ବିହଙ୍ଗ କାକଳୀ କିଙ୍କିଣୀ ମଞ୍ଜୁ ମଞ୍ଜୀର ତାନ
ଶୁଣି ଶୁକ ପିକ ସାରିକା ହର୍ଷେ କଲେ ଗାନ ।
ଫୁଟୁ କୁସୁମିତା ଲତିକା ଅଳି ସୁତନୁ ତାଳି
ନାଚନ୍ତି ପାଦପ ବିହନ୍ତି କର ପଲ୍ଲବେ ତାଳି ।
ଭ୍ରମରେ ଭ୍ରମର ଭ୍ରମିଲେ ଗୁଞ୍ଜି କୁସୁମ ଅଙ୍କ
ଉଷା ରାଗ ମୁଖୀ କୁସୁମ ଭ୍ରମ କରିଛି ରଙ୍କ ।
ମୁକୁଳିତ ଚୂତ ବକୁଳ ମାଳା ଦୋଳାରେ ବସି
କୋକିଳ ଲଳିତ ଛନ୍ଦରେ ଗୀତ ଗାଏ ଉଲ୍ଲସି ।
ସିତାସିତ ପୀତ ରକତ ବର ବରନ ଫୁଲ
ବନ ଭବନରେ ଫୁଟନ୍ତି ଶୋଭା ବଢ଼େ ଅତୁଳ ।
ପରବୀ ଶେଖରୀ ନଗରୀ ଶୋଭେ ନାଗରୀ ମଣି
ମଧୁ ଉଷା ବଧୂ ବଦନା ସାର ସୁଷମା ଖଣି ।

ଅବନୀ ମୋହନ ମୋହନୀ ନବ ଅପୂର୍ବ ଛବି
ବିଲୋକି ହୋଇଲେ ଅଥପ୍ପ କାମେ କାମୁକ ରବି ।
ପୂଷ୍ପ ଦେଶେ ରହି ସୁରଙ୍ଗ ଚେଲ କରି ଗୃଜନ
ପସ୍ୱେ ଧରି କରି ବଢ଼ାଇ ବାଳୀ କଲ ଲୋକନ ।
ଭୁରୁଣ ଅକ୍ତୁଣ ଗରବ ଖର୍ବ କରିବା ଅଣେ
ଧଇଲେ ଯୁଦ୍ଧଭେ ଅକର୍ଷି ରଙ୍ଗ ରୁଚିର ବାସେ ।
ଧରାଧର ହେଉ ସୁନ୍ଦରୀ ସଖୀ ବିହଙ୍ଗଗଣ
ଅଳୁରେ ଡାକିଲେ କେ ଅଛ ଧାଇଁ ଅଥ ବହନ ।
ପୂଷଣ ଦେବଙ୍କ ଦୂଷଣ ବୁଲି ଭୂଷିଲେ ବ୍ରୋଷେ
ଆମ ସଖୀଙ୍କି ଏ ଦଣ୍ଡ ଛୁଟି କି ପାଁ ଦେଖି ନନ୍ଦୋଷେ ।
ଲଲନା ଲଳିତ କୁସୁମ ସମ ପୁଂସ ଭେଷରୀ
ରବି ଛବି ଅବଗୁଣନେ ଭୂଷା ହେବ କି ସରି ।
ଚଣ୍ଡ କରେ ଜିଣି ଅବଲା ବାହାରିଲେ ଦୁ'ମଣି
ଲଳନା ଲଲାମ ଲଲାଟୁ ହର ତାରକାମଣି ।
ଯୋଷା କଣ୍ଠଭୂଷା ମୁକ୍ତା ଝଡ଼ିଥିଲା ସେ କାଲେ
ଖ, ରେ ଧାଇଁ ଖଗକରେ ତା ଭାନୁ ନେଲେ ତତ୍‌କାଳେ ।
ଝର ଝର ଅଶ୍ରୁ ଗଡ଼ାଇ ନେବ ପଙ୍କ ସୁନ୍ଦରୀ
ରହିଲା ସେଦିନ ମଜ୍ଜନ ନିଜ କମ ଅଦରି ।
ବାରୁଣୀ ନଗରୀ ବାସିନୀ ସନ୍ଧ୍ୟା ରାଣୀଙ୍କ ପାଶେ
ଖବର ଦେଲେ ସେ ଖବର ପ୍ରତିଶୋଧର ଆଶେ ।
ଏ ଛବି କି ଦେଖି କବି ଶ୍ରୀ ଦ୍ୱିଜ ମାଧବ ମନ
ଶୋଚନ ମୋଚନ୍ ବଚନ ଛଳେ କଲା ରଚନ ।

•

କବି ଲେଖନୀ ଛଟା ଗୃହସ୍ଥରେ ଭକ୍ତି ରସାତ୍ମକ କବିତାରେ
କପରି ଆତ୍ମ ସମର୍ପଣ କରି ପାରିଛନ୍ତି ଓ ତାହା କପଟ

ହୃଦୟସ୍ପର୍ଶୀ ହୋଇ ପାରନ୍ତି ତାହା ପାଠକମାନଙ୍କର କୌତୁହଳ ଦୂରୀକରଣ ନିମିତ୍ତ ନିମ୍ନରେ ଗୋଟିଏ ଉଦ୍ଧୃତ ଦିଆ ହେଲା ।

( ଭକ୍ତ ବତ୍ସଳ ନବ ଚନ୍ଦ ) ରାଗ—କାମୋଦୀ

ଜୟ ପଙ୍କଜ ମୁଖ କହିବା ପାଇଁ ଦୁଃଖ ହେଉଛି ଯଦି ମୋର ମନ, ତୁମ୍ଭର ନାମଚୟ ଶୁଣି ମୋର ହୃଦୟ ଭାବୁଛି କହିବ କେସନ ହେ ଦୟାନିଧି । କହିବ ଯଦି ଦୟାକର । ଏ ଭ୍ରମ ନୁହେଁ କି ମୋହର । କହନ୍ତି ମୁଁ ଅନାଥ ତୁମ୍ଭେକି ଜଗନ୍ନାଥ ସୁମନ ବଦନ ଶ୍ରୀଧର । ୧ । ଯଦି କହିବ ଦୀନ, ତବ ଗୌରବ ହୀନ, ହେବ ନାହିଁକି ଦୀନବନ୍ଧୁ, ମାଗନ୍ତି କିଛି ଅନ, ଶୁଣିଛି ଜନାର୍ଦ୍ଦନ, ତାପସ କଲେବର ଇନ୍ଦୁ ହେ ହୃଷୀକେଶ । ମନର କଥା କି କହିବ । ଯଦି ବା ମୁକତି ମାଗିବ । ହେ କମଳା ନାୟକ, ଚତୁର୍ବର୍ଗ ଦାୟକ ନାମକୁ କାହିଁ ଲଗାଇବ । ୨ । ତବ ରଙ୍ଗ ଚରଣ, ଯୁଗଳେ ମୁଁ ଶରଣ, ନେବାକୁ ବାଞ୍ଛିବ ଦେଖିଲି । ଚରାଚର ଶରଣ, ଗୃପାଦି ଚନ୍ଦ୍ରଗଣ, ଦେଖି ମୁଁ କାତର ହେଉଛି ହେ ଜଗଦୀଶ । ଭାବିଲି ଏ ପାବନ ପଦ । ବହିବ କିଏ ମୁଁ ସମ୍ପଦ । ବିହଙ୍ଗ ଚକ୍ରବର୍ତ୍ତୀ ଦର୍ପକ ଧର୍ପପତି ଉରଲି ଦେବେ କି ବିପଦ । ୩ । କରେ ଚକ୍ରବର ଧର, ବୋଲନ୍ତି ଅବଦାତ, ଗଦା ପଦ୍ମରେ ବିଦ୍ୟମାନ । ଦରକର ସରବ,ପଦ୍ମନ ଅବସ୍ଥିବ,ମଧ୍ୟରେ କାହିଁ ମୋର ସ୍ଥାନ ହେ ଜଗଦୀଶ, ମି ହେତ ବାନ୍ଧିବ ଭାବିଲି । ହିଦେବ ଶୁଣି ନିବର୍ତ୍ତିଲି । କହେ ମାଧବ ଚନ୍ଦ୍ର, ହେ ନୀଳ ଚଳ ଚନ୍ଦ୍ର, ନିରାଶ ହୋଇ ମୁଁ ଫେରିଲି । ୪ ।

ଅନ୍ୟଚ—

ଜୟ ଫୁଲି କୋକନଦ ଛବି ବନ୍ଦାପଦ—

ଛନ୍ଦ ଗଜଲ ଗତ

ତ୍ରିଭୁବନ ମୋହନ ତାପ ବିନାଶିନୀ
ସୁଧୀବ୍ରଜ ସେ ମୁକ୍ତିକଳ ବିହାରିଣୀ ହରେ ସବ ବିପଦ ॥୧॥

ବିଶଦ କମଳ ଚ୍ୟୁତ ବାଷ୍ପ ବିଭୂଷା
ଜଡ ନିବିଡ଼ ତିମିର-ମଣ୍ଡଳ ଜୟା
ନବ ଲଳିତ ଛନ୍ଦ । ୨ ।

ସୁଲଳିତ ଗୀତ—ମଧୁ ମଞ୍ଜୁଳ କୁଞ୍ଜ
ଦର ବିକଶିତ କଳିକ ବଞ୍ଜୁଳ ପୁଞ୍ଜ
କଳି ଗୁଞ୍ଜୁ ଷଟପଦ । ୩ ।

ଅକ୍ଷୟ ଅବ୍ୟୟ ରୂପ ନୂତନ ନିତ୍ୟ
ଗତ ମତ ଦାସ୍ୟକ ସନ୍ତୋଷ ସତ୍ୟ, ମାଧବର ସମ୍ପଦ । ୪ ।

ଆଦରସାତ୍ମକ—ଭାବ ସୌନ୍ଦର୍ଯ୍ୟ—ଦାନ ଲକ୍ଷଣ

ରାଗ—ତୋଡ଼ି ପରଜ

ରେ ସୁନ୍ଦର, ତୋ ବଦନ ଦରଶନ—
କଲାଚନ୍ଦ୍ର ମୋର ଯେବେ ଭୁଲାଇଲେ ଆନେ ନ ଯାଏ ନୟନ । ପଦ।
ମୋ ତନୁ ଶିଶିର ବନେ ନିରନ୍ତର ତୋ ବଳରୁତ ବଚନ
ଶୁଣି ମନ୍ଦ ମୃଦୁ ଗନ୍ଧବହ ପରି ଫୁଟୁଛି ଘନଘନ । ୧ ।
ମୋ ବିବେକ-କୁଞ୍ଜ ପୁଞ୍ଜ ସୁମଞ୍ଜୁଳ ବଞ୍ଜୁ କଳି ଷଟପଦ
ତୋରରେ ସୁମନା ବିକଶି ସୁମନା ଦେଉଛି ଇନ୍ଦ୍ର ସମ୍ପଦ । ୨ ।
ତୋର ଅକଳିତ ମୋହନ ଲଳିତ ତନୁ କନକ ମଞ୍ଜୁଷା
ମଣ୍ଡି ଦେଲାଣି ମୋ ଚେତନା ପାଦପ ସନ୍ତତ ଶତେ ସରସ । ୩ ।
ଭବ ବୋଧଜନ ପଦକଜଛନ୍ଦ ସମ୍ପୃକ୍ତ ପଲ୍ଲବ ଫୁଲ
ଭାବ ସଉରଭ ଦାନ ନ କଲେହେଁ ବହୁଛି ଶୋଭା ଅତୁଳ । ୪ ।
ମୋ ଆଶା ବିତାଣ କୁସୁମେ ତୋ ଛଳ ଭ୍ରୂଯୁଗଳ ମଣ୍ଡି ଅଳି
ଗୁଞ୍ଜନ ଛଳରେ କହୁ ଦେଉଛନ୍ତି ଚିକଣ ନା ବୁଝାଇଲି
ସଖି ତୋ ଅଞ୍ଚଳ କୁସୁମ ଉଦ୍ୟାନେ ବାସ ଦେଇ ଦିଅ ବାସ
ଶ୍ରୀ ମାଧବ ଚନ୍ଦ୍ର ମାନସ ମିଳିନ୍ଦ କରେ କଳ୍ପନା ବିକାଶ । ୫ ।

ଭବାଙ୍କର ଅଶୁ କବିତା ଶକ୍ତି ଏବଂ ବୁଦ୍ଧିର ପରୀକ୍ଷା ନିମିତ୍ତ ସୁକନ୍ଦା ଧରଣୀଶ୍ୱର ଶ୍ରୀ ଶ୍ରୀ କୃତ୍ତିବାସ ଭୂପତି ପ୍ରଶ୍ନ କରିଥିଲେ— "ନୟନେ ନଟତି ବାବଦ ମାଳେ ଯଥା ବକ୍ରୀଗତି" ଏହି ପଦ୍ୟାଂଶଟିର ପାଦ ପୂରଣ କରନ୍ତୁ, ଏହି ପଦରେ ନଟ ଧାତୁର କ୍ରିୟାପଦ ପ୍ରୟୋଗ କରିଥିବାରୁ କବି ବୁଝିପାରି ଯଥୋଚିତ ନିୟମରେ ପାଦ ପୂରଣ କରିଛନ୍ତି—

ଅବନୀ ଭୂଷା କନକ ମଞ୍ଜରୀ, ପ୍ରେମ ପାଠିକା ସାରିକା ଦିଞ୍ଜରୀ
ଅକଳଙ୍କ ପୂର୍ଣ୍ଣ ଚନ୍ଦ୍ର ବଦନା, କରଇ ବୀଜ ନିନ୍ଦିତ ରଦନା
ନୟନେ ନଟତି
ବାବଦ ମାଳେ ଯଥା ବକ୍ରୀଗତି । ୧ ।
ଅବନୀ ବନିତା ଶିରଷଭୂଷା, ପ୍ରଫୁଲ୍ଲି ଅମଳ କମଳ ଦୃଶା
ବୀଣାକଣା ବାଣୀ ଶ୍ରେଣୀ ମଧୁର, ଅହୋ ପ୍ରିୟେ ତବ ଗୁଣ ବିଧୁର । ୨
ଜଘନେ କରଜ ଲାଞ୍ଛନ ବ୍ରଜ, ସବର୍ଣରେ ଯଥା ଶାବଦାମ୍ବୁଜ
ମଦ ଦ୍ୱିରଦ ଗତି ମତି ଜ୍ଞ ନା, ଶିରୀଷାଙ୍ଗୀ କେଳିକଳା ପ୍ରବୀଣା । ୩
ଶରମଦନ କଦନ ଖଣ୍ଡନା, ମମ ଅପଦ ସ୍ତବକ ମଣ୍ଡନା
ଖଞ୍ଜନ ଗଞ୍ଜନ ଜନ ମୋହନ, ନୟନ ଅୟନ ପଦ ଭମନ । ୪ ।
କୁସୁମ ଖଚିତ ଶାରଦ ଇନ୍ଦୁ, ବଦନେ ରତ୍ନାନ୍ତିକ ସ୍ୱେଦ ବିନ୍ଦୁ
କନକ କାଞ୍ଚନ ପାତ୍ରେ ସ୍ଥିରତ, ବଜ୍ର ବ୍ରଜେ ଯଥା ପୁଷ୍ପଗାଥିତ । ୫ ।

ଉଲ୍ଲିଖିତ ଭୂପତିଙ୍କର ୨ୟ ପ୍ରଶ୍ନ ରାଜା ରହସ୍ୟରେ ଚନ୍ଦ୍ରଙ୍କୁ କେବେ ପିମ୍ପୁଡ଼ି କାମୁଡ଼ିଥିଲା ପଚାରିଥିଲେ, କବି ରାଜାଙ୍କର କୌତୁକ ପ୍ରଶ୍ନ ବୁଝିପାରି ନିମ୍ନଲିଖିତ କବିତାଟି ପାଠକଲେ—

ଜାଗର ଯାମିନୀମୁଖେ ଶଶଧର ଥିଲେ ଏବଂ ଲଲାଟରେ
ତେଲକଳା ପୂର୍ଣ୍ଣ ବାହୁରେ ଷୋଡ଼ଶପୂର୍ଣ୍ଣ ମଧୁ ପୀୟୂଷରେ
ଅବନୀସ୍ୱନ ଦଧି ଦୁଗ୍ଧ ଘୃତେ କରିଥିଲେ ଅରଚନ
ଏ କାରଣୁ ସେଇ ପିପିଲିକା ବୃନ୍ଦ ଚନ୍ଦ୍ରଙ୍କୁ କଲେ ଚୁମ୍ବନ ।

ହେ ପବନମସ୍ତୁ ସୁଚ୍ଛନ୍ଦାଧରଣୀ ରାଣୀ ସୀମନ୍ତଭୂଷଣ
ମୌଳିକ ରଚନା ହେତୁ ଚୁମ୍ବକରେ କଲ ଏହାକୁ ପୂରଣ ।

ସିଂହଭୂମି ଜିଲା ଅନ୍ତର୍ଗତ ଖରସୁଆଁ ରାଜା ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର ସିଂହ ଦେବ ରୁଲିଂଚିଫ୍ ବାହାଦୁରଙ୍କର ରାଜସଭାରେ ଆଶୀର୍ବାଦ ସୂଚକ ନିମ୍ନଲିଖିତ ଶ୍ଲେଷାତ୍ମକ ଶ୍ଳୋକଟି ଅଶୁ କବିତା ବଳରେ କବି-ପାଠ କରିଥିଲେ ।

ଭୂଜାଚୂଡ଼ାସ୍ତୁଭ୍ରତସ୍ତ, ଲଙ୍କାମାସ୍ୱଚ ମର୍ଦ୍ଦନଃ—
ବଂଶାର୍ଦ୍ଧକଦଳୀ ନିତ୍ୟଂ କୁର୍ବନ୍ତୁ ତବ ମଙ୍ଗଳଂ ।

କବି ଏହିପରି ଅଦ୍ଭୁତ ଅଶୁ କବିତା ଶକ୍ତିବଳରେ ଅନେକ କୃତବିଦ୍ୟ ଲବ୍ଧପ୍ରତିଷ୍ଠ ବ୍ୟକ୍ତିମାନଙ୍କଠାରୁ ଅନେକ ସାଟିଫିକେଟ୍ ପାଇ ପାରିଛନ୍ତି । ତହିଁରୁ ଅଳ୍ପ କେତୋଟି ନିମ୍ନରେ ପ୍ରଦତ୍ତ ହେଲା—

ପଣ୍ଡିତ ଶ୍ରୀ ମାଧବଚନ୍ଦ୍ର ମିଶ୍ରଙ୍କ ରଚିତ ଭକ୍ତିକଳ୍ପଲତା କାବ୍ୟର ପାଣ୍ଡୁଲିପିରୁ କିୟଦଂଶ ପାଠକରି ପ୍ରୀତ ଲାଭକଲି । ସୁଖର କଥା ଏ କାବ୍ୟର କଳ୍ପନାର ବିଳାସ ସହିତ ଔଚିତ୍ୟ ଓ ମାଧୁର୍ଯ୍ୟର ସନ୍ନିବେଶ ଅଛି । ଭାଷାରେ ପ୍ରାଚୀନ ଓ ନବୀନଶୈଳୀର ସମାବେଶ ହେବା ହେତୁ ଏହା ଉଭୟ ପନ୍ଥୀଙ୍କ ଚିତ୍ତାକର୍ଷକ ହେବ ବୋଲି ମୋର ବିଶ୍ୱାସ । ଆମ ଦେଶର ଏପରି ସାହିତ୍ୟାନୁରାଗୀ ତଥା କାବ୍ୟ ବିନୋଦୀଙ୍କର ହୃଦୟମାନଙ୍କୁ ସହାନୁଭୂତି ସହ ସାହାଯ୍ୟ କରିବା ଉଚିତ । ଏ ଛନ୍ଦକାବ୍ୟଟି ଜନସାଧାରଣଙ୍କ ହୃଦୟଗ୍ରାହୀ ହେବ । ଏହାମୋର ଧାରଣା ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ।
ଅଧ୍ୟାପକ-ରେଭେନ୍ସା କଲେଜ
କଟକ

ତା ୫।୯।୪୭

ପଣ୍ଡିତ ଶ୍ରୀ ମାଧବଚନ୍ଦ୍ର ମିଶ୍ରଙ୍କ ରଚିତ କାବ୍ୟ କଳ୍ପଦ୍ରୁମର ତୃତୀୟଖଣ୍ଡ ପାଠକରି ଆନନ୍ଦିତ ହେଲି । କବି ନୂତନ ନୂତନ କଳ୍ପନା ସୃଷ୍ଟି କରି କାବ୍ୟକୁ ମନୋହର କରିଛନ୍ତି । ଅନେକ ସ୍ଥାନରେ ଅଳଙ୍କାରର ସନ୍ନିବେଶ ଓ ଅନୁପ୍ରାସର ପ୍ରୟୋଗ କାବ୍ୟାଙ୍ଗନାର ଶୋଭାବୃଦ୍ଧି କରିଅଛି । କବି ଗଙ୍ଗାଧରଙ୍କ ପରି ପ୍ରାଚୀନ ଓ ନବୀନ ଢଙ୍ଗର ଅପୂର୍ବ ମିଳନ କରି ପାରିଛନ୍ତି । ତେଣୁ ଏହି କାବ୍ୟ ଖଣ୍ଡିକ ପ୍ରାଚୀନ ଓ ନବୀନ ଶୈଳୀର ପଥିକମାନଙ୍କୁ ଅପୂର୍ବ ଆହ୍ଲାଦ ପ୍ରଦାନ କରିବ ବୋଲି ଆଶାକରେ । କବି ଆର୍ଥିକ ଅଭାବରେ ପଡ଼ିମଧ୍ୟ ଅନବରତ ସାହିତ୍ୟ ଚର୍ଚ୍ଚା କରୁଥିବାରୁ ସମସ୍ତଙ୍କର ପ୍ରଶଂସା ଭାଜନ ହୋଇଛନ୍ତି ।
। ଇତି ।

ଶ୍ରୀ କରୁଣାକର କର

ତା ୪।୯।୪୭ ଅଧ୍ୟାପକ ରେଭେନ୍‌ସା କଲେଜ, କଟକ

ପଣ୍ଡିତ ଶ୍ରୀ ମାଧବଚନ୍ଦ୍ର ମିଶ୍ରଙ୍କର ଭକ୍ତକଳ୍ପଲତା ନାମକ କାବ୍ୟର ପାଣ୍ଡୁଲିପି ପାଠକରି ପ୍ରୀତ ହେଲି । ଏହା ତାଙ୍କ ରଚିତ କାବ୍ୟ କଳ୍ପଦ୍ରୁମ ଗ୍ରନ୍ଥର ତୃତୀୟ କାବ୍ୟ । କବିଙ୍କର ଭାଷା ଓ ଭାବ ଉଭୟ ଏଥିରେ ପ୍ରକର୍ଷ ଲାଭ କରିଛି । ଓଡ଼ିଆ ସାହିତ୍ୟର ପରମ୍ପରା ଏଥିରେ ସୁସ୍ପଷ୍ଟ । ବିଶେଷତଃ ଭକ୍ତବର ସୁଦାମାଙ୍କର ଚରିତ ଏହି କାବ୍ୟର କଥା ଶରୀରରୂପେ ହୃଦୟକୁ ସ୍ପର୍ଶ କରିବ ବୋଲି ମୋର ଧାରଣା । ଆଶାକରେଁ କବି ଉତ୍ତରୋତ୍ତର ସୁକାବ୍ୟମାନ କରି ନିଜର ତୃପ୍ତି ଓ ସହୃଦୟମାନଙ୍କର ଆନନ୍ଦ ବର୍ଦ୍ଧନ କରିବେ । ଇତି ।

ଶ୍ରୀ ବାନାମ୍ବର ଆଚାର୍ଯ୍ୟ

ତା ୬।୯।୪୭ ସାହିତ୍ୟାଚାର୍ଯ୍ୟ ବିଦ୍ୟାଭୂଷଣ
ଲେକ୍‌ଚରର, ଉତ୍କଳ ଖ୍ରୀଷ୍ଟାନ କଲେଜ
(ଏଡ଼ିଟର ବେଦାନ୍ତର ଗ୍ରନ୍ଥମାଳା
କଟକ

—ଶ୍ରୀ ବଣ୍ଟଦ ଶାରଜାତ୍ୟାଂଶ୍ରମଃ—

ଶ୍ରୀ ମନ୍ମାଧବଚନ୍ଦ୍ର ଶର୍ମ୍ମ କୃତାନେ ସତ୍କାବ୍ୟକଳ୍ପଦ୍ରୁମେ
ମାଧୁର୍ଯ୍ୟାଦି ଗୁଣାବଳୀ-ସଫଳତା ପ୍ରାଯ୍ୟୋଦୟ ଦୃଶ୍ୟତେ ।
ନାନାଭାବ ସମୃଦ୍ଧିସତ୍ ସୁମନସାଂ ଲୋଭନ୍ତ୍ରା ସମିଳତ୍
ଷଡ୍ଭଦ୍ଭୃଙ୍ଗ ବିରାଜିତଃ ସତ୍ତ୍ୱପୂନବନ୍ଦତି ସଦ୍ୟାଦ୍ର୍ରୁତଃ ॥
ଦୋଷାସଂସକ୍ତତ ନ ହେଯ୍ୟମେତତ୍
ମଦ୍ଭକ୍ତ ବୀନାମପିତତ୍ ପ୍ରସଙ୍ଗଃ
ମନୋହରଂ ହ ଷ୍ଟେ ହାରବଲ୍ଲୀ
କାଚଂ ବିନାନେହ ବିଭାତି ସମ୍ୟକ୍
ଭବମାଧବଚନ୍ଦ୍ରୋସୌ ଜଗଦୀଶ ପ୍ରସାଦତଃ
ବେଗ ଣେ ହାଦ ରହ୍ମଭୋ ଭୂୟାଦ୍ଦୀର୍ଘାୟୁଷାଯୁତଃ ॥

ତା ୧୩।୧୦।୩୯
ଯଜପୁର

ଶ୍ରୀ ଭଗବତ ଶର୍ମା କାବ୍ୟତୀର୍ଥ ଶାସ୍ତ୍ରୀ
ପ୍ରଧାନାଧ୍ୟାପକଃ—
ବିରଜା ସଂସ୍କୃତ ବିଦ୍ୟାଳୟସ୍ୟ ।

କବି ଶ୍ରୀ ମାଧବଚନ୍ଦ୍ର ମିଶ୍ରଙ୍କର ରଚିତ କାବ୍ୟ କଳ୍ପଦ୍ରୁମ ବିରାଟ ଗ୍ରନ୍ଥର ସଂକ୍ଷେପ ପରିଚୟ ଏହି କ୍ଷୁଦ୍ର କାବ୍ୟ ଭକ୍ତି କଳ୍ପଲତାର ମୁଖବନ୍ଧରେ ଲେଖିବା ଆଶ ପୋଷଣ କରିଥିଲି, ତାହା ମୋ ର ଜ୍ଞାନ ଏବଂ ବିବେକ ପକ୍ଷରେ ଗଗନ କୁସୁମ ଲାଭ କଲା ପରି । ଉତ୍କଳ ଭାଷାରେ ହୁଏ ମୋର ପୂର୍ଣ୍ଣ ପଢ଼ିତା ନାହିଁ । ତେଣୁ ବିନୀତ ଅନୁରୋଧ କରେ ଯେ ପାଠକବୃନ୍ଦ ମୋର ଭ୍ରମ ପ୍ରମାଦ ପ୍ରତି ଦୃଷ୍ଟି ନିକ୍ଷେପ କରିବେ ନାହିଁ !

ଆଶ କରେ ଶ୍ରୀ ମାଧବଚନ୍ଦ୍ର କାବ୍ୟ କଳ୍ପଦ୍ରୁମ କବିତା କୁସୁମ-ଜଦମ୍ଭାନ ମଧ୍ୟରୁ ଭକ୍ତ ଭକ୍ତିକଳ୍ପଲତା ନାମକ କ୍ଷୁଦ୍ର ଧାରେ କାଶ ସୌରଭ କୁସୁମ-ରନ୍ ସାହିତ୍ୟ କାନନ କୁଞ୍ଜକୁସୁମ ଷଟ୍ପଦ ସମ୍ରାଟମାନଙ୍କର ନୟନ ଗୋଚର ହେଉ ।

ବସ୍ତୁବୈଣାଳଂ

୩୦।୧।୪୭

ବଶମ୍ବଦ ଶ୍ରୀ
ବୃନ୍ଦ ବରଦା

# ଉତ୍ସର୍ଗପତ୍ର

କବି ଗୁରୁ ବେଦବ୍ୟାସ ବିରଚିତ ପ୍ରସିଦ୍ଧ ଶ୍ରୀମଦ୍ ଭାଗବତ ବର୍ଣ୍ଣିତ ଭାଗୀରଥୀ ପୂତଧାରା ସଦୃଶ ଏହି ସୁଦାମ ସୁମତି ଚରିତକୁ ମୋର ଅନୁଜ ଶ୍ରୀମାନ ଶତ୍ରୁଘ୍ନ ଓ ଯଦୁନାଥଙ୍କ ଅନୁରୋଧରେ ପଦ୍ୟାକାରରେ ରଚନା କରି ଥିଲେହେଁ ଅସୁବିଧା ବଶତଃ ତାହାର ପୁନରାଲୋଚନା କରିପାରି ନ ଥିଲି । କିଛି ଦିନ ପରେ ଅତି ଯତ୍ନ ସହିତ ଶତ୍ରୁଘ୍ନ ଓ ଯଦୁନାଥ ଉକ୍ତ ଭକ୍ତି କଳ୍ପଲତା କାବ୍ୟଟିର ପାଣ୍ଡୁଲିପି ସଂଗ୍ରହ କରି ପୁସ୍ତକାକାର କରି ମୋତେ ଦେଖାଇ ବାରୁ ମୁଁ ହୃଷ୍ଟ ଓ ବିସ୍ମିତ ହେଲି । କାଳ କ୍ରମେ କୋରାଇ ମି, ଇ, ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ନାରାୟଣ ତ୍ରିପାଠୀ ଉକ୍ତ କାବ୍ୟଟି ପାଠକରି ଅସୀମ ଆନନ୍ଦ ଲାଭ କଲେ, ଏବଂ କାବ୍ୟଟିରୁ ଅନେକ ଜଟିଳ ଶବ୍ଦ ପରିବର୍ତ୍ତନ କରିବାରେ ଯତ୍ନ କରି ଥିଲେହେଁ ମୋର ସଜୀବ ବିଗ୍ରହ ରୂପାର କାପାରେ କାବ୍ୟ ବିଷ ପ୍ରସୂନ ବିକାଶର ରବାନ୍ତର ଦର୍ଶନ ଆଶାପୋଷଣ କରି ନ ଥିଲି ।

ପିଲାମାନଙ୍କର ବାକ୍ୟ ଗୁଡ଼ିକ ଅର୍ଦ୍ଧବିକାଶ ଏବଂ ଦୋଷ ପୂର୍ଣ୍ଣ ହେଲେହେଁ ତାହା ଶ୍ରବଣ କରି ସର୍ବଜନ ଆନନ୍ଦ ଲାଭ କରନ୍ତି । ଏହି ବଳରେ ମୋର ଏ କ୍ଷୁଦ୍ର କାବ୍ୟଟି ସର୍ବାଦୃତ ହେବା ଆଶା ପୋଷଣ କରି ପାଠକପାଠିକାମାନଙ୍କ ପବିତ୍ର କରକମଳରେ ଭକ୍ତି ସହିତ ଅର୍ପଣ କଲି । ଇତି—

ବିନୟାବନତ
ଗ୍ରନ୍ଥକାର

ଶିକ୍ଷା ବିଭାଗ ମନ୍ତ୍ରୀ,

ମାନ୍ୟବର ଶ୍ରୀଯୁକ୍ତ ଲିଙ୍ଗରାଜ ମିଶ୍ର, ଏମ୍, ଏ, ଶିକ୍ଷା ବିଭାଗ ତରଫରୁ ଏ କାବ୍ୟ ପ୍ରକାଶ ପାଇଁ ଆଂଶିକ ସାହାଯ୍ୟ କରି ଅଛନ୍ତି, କିନ୍ତୁ ଗଭର୍ଣ୍ଣମେଣ୍ଟ ତରଫରୁ ସମ୍ପୂର୍ଣ୍ଣ ସାହାଯ୍ୟ ନ ହେବାରୁ ନିମ୍ନ ଲିଖିତ ବ୍ୟକ୍ତିମାନଙ୍କ ଠାରୁ ଅଭାବ ପୂରଣ କରିପାଇ ଏ କାବ୍ୟ ପ୍ରକାଶ କରିଗଲା ।

୧—ମୌଲବି ସୟୁଦ ଫଜଲେହକ, ଏମ, ଏଲ୍, ଏ, ଓଡ଼ିଶା

| | |
|---|---|
| ପଣ୍ଡିତ ନାରାୟଣ ଦାଶ | ନନ୍ଦକିଶୋରପୁର ଶାସନ, |
| ଡାକ୍ତର—ଶ୍ରୀଯୁକ୍ତ ବିଶାରଦ ଖାଁ | ବ୍ରହ୍ମବରଦା |
| ଶ୍ରୀ ଅଦ୍ୱୈତ ଚରଣ ଧୀର ବୀରବର୍ମା | ହିଙ୍ଗୋ |
| ଶ୍ରୀ ଲମ୍ବୋଦର ପଣ୍ଡା | ବୀରଭାନୁପୁର ଶାସନ, |
| ଶ୍ରୀ ପଦ୍ମନାଭ ପଣ୍ଡା | ,, |
| ଶ୍ରୀଯୁକ୍ତ କାଳନ୍ଦୀ ଚରଣ ସାହୁ | କଇଁ ଶାସନ |

I have gone through some of the writings of Srijut Madhab Chandra Misra, a poor young poet of Madhupur Estate. He is in need of encourgement in shape of money and other helps. His Sanskrit and Oriya writings clearly shone that he is a talent poet. I sincerely wish him success in his noble endeavour.

29-9-38

**MOTILAL PANDIT**
Vice-Chairman, District Board

---

I am glad to certify that Srijut Madhab Ch. Misra comes of a respectable Brahman family of the Madhupur Estate. He is promising young poet, well-versed in Oriya literature. I have gone through some of his poems written in Oriya. They are written in an elegant style after the fashion of the old poets of Orissa. His Sanskrit poems also are worth reading if a little improvement is made on them. I am sorry however, to say that the poet is very poor and has, therefore to devote most of his time to earning money for supporting his family. If he is kept above wants, I strongly believe he will make a very good poet and enrich the Oriya literature by his writings. I shall be very glad if he is encouraged in his noble endeavour.

I wish him good luck

Jajpur
The 23rd June
1939

**A. MISRA**
Head Master
Jajpur High School

## ବାଣୀ ଆବାହନ

ବ[illegible]ଦଭାଷା ରତ୍ନାକରେ କଣ୍ଠ କଳପଦ୍ମେ ଅନନ୍ତ—
ପୃଷ୍ଠରେ ବିହାର କରୁଛନ୍ତି ଦେଖି କମଳା ସଙ୍ଗେ ଅନନ୍ତ ।
ଭୁଜ-ବରଦ ବୀଣାଧାରିଣୀ ହେ ବାଣୀ-ରାଣୀ ଏ ପୃଣ୍ଡ୍ରଭବନେ
ବିରାଜିବ ଅବା ନାହିଁ ହେ ଜନନୀ କହୁଦେବକି ଗୋ ପଦେ ॥
ସଫଳ ବିଫଳେ ନାହିଁ ମନୋରଥ ବିରାଜି ଅସି ମା ଥରେ
ଚିର ଅଭିଶପ୍ତ ଅତୃପ୍ତନୟନ ବିଲୋକୁ ନେହପଥରେ ॥
ବିଘ୍ନ ପରଚଣ୍ଡ ପବନ ବହୁଛି ଘର୍ଣ୍ଣି-ଘୂର୍ଣ୍ଣିନାଦ ଜାଲେ !
ଦିନୁଦିନ ମନ ଦୁର୍ବଳ ହେଉଛି କେ ଜାଣି କି ଅଛି ଭାଲେ ॥

# ପ୍ରଥମ ସର୍ଗ

ରାଗ—ମାଳବ

ଜମ୍ବୁହର-ଅଙ୍କ ସର-ଗୃରୁ ପଙ୍କଜିନୀ,
ତ୍ରିତାପ ହାରିଣୀ, ପଞ୍ଚପ୍ରାଣ ସ୍ୱରୂପିଣୀ । ୧ ।
ଗୀର୍ବାଣ ବାଣୀ ରୂପିଣୀ, କାବ୍ୟ ବିନୋଦିନୀ
ବନ୍ଦୁ ଦଶାନନ ବନ ଗରବ ପାବନୀ । ୨ ।
କବି କଣ୍ଠ ବାଦିନୀ ହେ ଗିରିରାଜ ସୁତେ ।
ମୂଢ଼େ ବାତୁଳ କର ଯେ ଶକ୍ତି ଅଦଭୁତେ । ୩ ।
ସେ ଅଦ୍ଭୁତ ଗୁଣ ବାରେ କର ମା ବିସ୍ତାର
ବାଳିଶ ମତ [illegible] ମାଧବ ହେଉ ଗ୍ରନ୍ଥକାର । ୪ ।
କାବ୍ୟ ପଦ୍ମ ପଦ୍ମସ ଦୂଷଣ ରାଜହଂସ
ନିବେଶ ଏଥି ମାନସ ବୁଧ ବଂଶ-ହଂସ । ୫ ।
ନଗର ନିକର ଶିର କଳସ କେତନ
ଅବନ୍ତୀ ନଗରୀ ଯଶ ଭୁବନ-ବନ୍ଦନ । ୬ ।
ଅବନୀ ସୁମନ ବୃନ୍ଦ ବସନ୍ତ ଜ୍ୟୋତ୍ସ୍ନାନେ
ଅବନୀଶ ପୂଜ୍ୟ ସର୍ବେ ନିତ୍ୟ ପୂତ ମାନେ । ୭ ।
ଶ୍ରୁତି ବେଦାନ୍ତ ଅଧ୍ୟାତ୍ମ୍ୟ କାବ୍ୟ ବିନୋଦରେ
କାଳ କାଟନ୍ତି ସୁମନ ପୁଜ, ସୁମନରେ । ୮ ।
ସୁମନା ତହିଁ ତନୁଜ ସୁମନାଙ୍କ କର୍ମ
ଦେବ ସେବା, ଅନ୍ତେ ସ୍ୱାମୀ ପଦସେବା ଧର୍ମ । ୯ ।

ସ୍ୱାମୀର ଅଙ୍କ ମଣନ୍ତି ରତ୍ନ ସିଂହାସନ
ସ୍ୱାମୀ ପଦସେବା ସବୁ ତୀର୍ଥ ଦରଶନ । ୧୦ ।
ଐଶ୍ୱର୍ଯ୍ୟ ଜାଣନ୍ତି ନାହିଁ ପତି ପ୍ରେମ ବିନା
ନବଦନ୍ତି ବଦନରେ କେହି ଦିନେ ଘିନା । ୧୧ ।

ସେ ଐଶ୍ୱର୍ଯ୍ୟ ମଧୁ ପୂର ମଞ୍ଜୁଷା ରତନ
ଭକତ ସୁଦାମ ସବୁ ସୁଖ ନିକେତନ । ୧୨ ।
ଭିକ୍ଷା ତଣ୍ଡୁଳ କେବଳ ଜୀବନ ସମ୍ବଳ
କ୍ଷୀର ସିନ୍ଧୁ-ଜେମା ଧବ ହୃଦସ୍ଥିର ବଳ । ୧୩ ।

ସେ ଭୂଦେବ ମନୋହାରୀ ସତୀ ଅଗ୍ରଗଣ୍ୟା
ନାରୀ କୁଳ-ଆଭରଣ ସାରା ବଙ୍ଗେ ଧନ୍ୟା । ୧୪ ।
ସୁଶୀଳା ସରଳା ଲୋଭ ବିହୀନା ସୁମତି
ପତି ପଥ ଗତି ସଦା ଚିତ୍ତର ସୁମତୀ । ୧୫ ।

ପତି ପଦ ଆରାଧନା ଜୀବନ ସମ୍ବଳ
କୋଟି ତୀର୍ଥ, ବ୍ରତ ଫଳ ପତି ହିଁ କେବଳ । ୧୬ ।
ପତିବ୍ରତା ନେତ୍ରେ ଦିଶେ କନ୍ଦର୍ପ କୁରୂପ
ରାଜ ସମ୍ପଦ ଦିଶଇ ଉଚ୍ଛିଷ୍ଟ ସ୍ୱରୂପ । ୧୭ ।

ପ୍ରାଚୀନ କୁଟୀରେ ଥାଇ ଭକତ ଦମ୍ପତି
ଦୁହେଁ ଦୁହିଁଙ୍କୁ ମଣନ୍ତି ସରଗ ସମ୍ପତ୍ତି । ୧୮ ।
ପରସ୍ପରେ ସ୍ନେହ-ସିନ୍ଧୁ ତରଙ୍ଗ ଖେଳଇ
ସନ୍ତାପ ଅନଳ ବଳ ହେଲେ ସହରଇ । ୧୯ ।

ସରବଦା ବତୀ ମାନବ ଶାନ୍ତି ଲଭେ କାହିଁ ?
ଧନ ସଞ୍ଚୟରେ ଅହରହ ଭ୍ରମୁଥାଇ । ୨୦ ।
ନିତ୍ୟ ଅଶନ ଅର୍ଜନ ଚିନ୍ତା ଥାଏ ଯା'ର
ଅନଶନ ହେଲେ ସୁଦ୍ଧା ସ୍ୱର୍ଗ ସୁଖ ତା'ର । ୨୧ ।

ଖାଦ୍ୟ ପରଧାନ ବନା ଯା ଅଧିକ ଚନ୍ତା
ଚନ୍ତା ନୁହେ ସେ ଶରୀର ଦହନର ଚିତା । ୨୨ ।
ଏଣେ ଅସ୍ଵବନ୍ଧୁ ଅନଶନେ ଧୋଳା ଜନ-
ବନ୍ଧୁ, ହେଲେ ଜାଣି ମୁଖେ କଥୋପକଥନ । ୨୩ ।
ସୁମତୀ ଚତୁର ଧର ଭକ୍ତ ଚୂଡ଼ାମଣି
କହନ୍ତି ମୋ ଯୋଗେ ଦୁଃଖୀ ତୁ ସିନା ମିତଣୀ । ୨୪ ।
ଏ ଅଧମ ପାଇଁ ସିନା ଅନଶନ ବ୍ରତ-
କରୁଛୁ, ପ୍ରେୟସୀ ବରଷରେ ସତ ଶତ । ୨୫ ।
କେତେବେଳେ ମୋହ ପାଇଁ ନୁହେ ମୁହିଁ ଦୁଃଖୀ
ତୋହ ଦୁଃଖ ଜନ୍ମ ଦହୁ ଅଛିରେ ସୁମୁଖୀ । ୨୬ ।
ମୃଦୁଲ ପୀୟୂଷ ହାସେ ଭାଷନ୍ତି ସୁମତୀ
ନେହ ଭଣା କଥା କପାଁ କୁହ ପ୍ରାଣପତି । ୨୭ ।
ପତି ଦୁଃଖେ ଦୁଃଖୀ ପତିବ୍ରତ ନୁହେ କି ?
ପତି ଦୁଃଖରେ ରମଣୀ ବଭବ ଇଚ୍ଛେ କି ? । ୨୮ ।
ପତି ଯାର ଧନ ରତ୍ନ ମାନ ଗଉରବ
ତା ପକ୍ଷେ ଆଉ ଅଟଇ କୃତ୍ରିମ ବଭବ । ୨୯ ।
ଚରଣ ଶରଣ ଜନେ ଏପରି ଉକତ
କହବ ନାହିଁ ମୋ ରଣ ଅଛି ପ୍ରାଣପତି । ୩୦ ।
ଅନ୍ତରେ ପ୍ରଶଂସି ସତୀ ଅନ୍ତ୍ୟରୂପ ବାଣୀ
ଅଲଙ୍ଗି ଭୂଦେବ ବୋଲେ କ୍ଷମାଇଲେ ଅଣି । ୩୧ ।
କ୍ଷୀର-ସାଗର- ନନ୍ଦନୀ- ହୃଦୟ-ଚନ୍ଦନ
ପଦ୍ମ ପଲାଶ ଲୋଚନ ସୁମନ ବନ୍ଦନ । ୩୨ ।
ନାମ ପୀୟୂଷ ରସକୁ କରଣ ସେବନ
ଅସ୍ଵ ବାନ୍ଧବରେ ! ଜାଣି କରବା ଯାପନ । ୩୩ ।

ଶ୍ଳେଷ ଶ୍ରେଣୀ ବନ ଦାନ ସମାନ ସୁମତୀ
ସମ୍ବଳ ମନେ ରଚିଲେ ପତ ପଥ ଗତ । ୩୪ ।
ବିଷ୍ଣୁ ପଦ୍ମ ପଦେ ଦୁହେଁ ଦେଲେ ମନ ପ୍ରାଣ
ଶ୍ରୀ ମାଧବ ଚନ୍ଦ୍ର ମିଶ୍ର ହର୍ଷେ କରେ ଗାନ । ୩୫ ।

●

## ଦ୍ୱିତୀୟ ସର୍ଗ

ରାଗ—ରାମକେରୀ

ଅମଳ-କମଳ-ନୟନ କାନ୍ତ ଭକ୍ତ ଦମ୍ପତି
ଇଷ୍ଟା ଯୋଷାବର ବିଜୟ ଯେନ ଶୋଭା ସମ୍ପତ୍ତି । ୧ ।
କୁଙ୍କୁମ ବରଣ ତରୁଣ ଅରୁଣର କିରଣ
ରୁହ୍ନେ କମଳିନୀ କାମିନୀ ମୋଦେ କଲା ବରଣ । ୨ ।
ବିମଳ ସୌରଭ ନିଧାନ ପୁଷ୍ପ କମଳ କୋଳେ
ପୂଲବାଳା ପ୍ରୀତି ଲମ୍ପଟ ଅଳି ମିଳିଲେ ଭେଳେ । ୩ ।
ଦ୍ୱାରକା ନଗର ନରେନ୍ଦ୍ର ନୃପ ନିକର ଚନ୍ଦ୍ର
ଦୀନ କଇରବ କାନନ ମୋଦ ବର୍ଦ୍ଧନ ଚନ୍ଦ୍ର । ୪ ।
ବାଲ୍ୟକାଳ ବନ୍ଧୁ ଅମ୍ବର ଦୁଃଖ ନାଶନ ହରି
ଅନ୍ତରେ ମନ୍ତ୍ରର ପରଏ ସ୍ଥାନ ଦେଇ ସୁଦାମା— । ୫ ।
କହୁ ଅଛୁଥିଲେ ପତିଙ୍କି ଯାଇଁ ତାଙ୍କ ଭକତ
ଜଣାଅ ଦୁଃଖକୁ ମାଟିର କି ଅପିଲ ମତକ । ୬
ଲଜ୍ଜା ଅନୁରୋଧ କୁଣ୍ଡରୁ ନସ୍ଥ୍ରବଲ୍ଲ ବଚନ
ପାଣ୍ଡୁ ହେଲା ଗଣ୍ଡ ମଣ୍ଡଳ ବୁଜି ହେଲା ଲୋଚନ । ୭ ।
ମୋ ପ୍ରାଣ ପରାଣ ବାନ୍ଧବୀ କହ କି କହୁଥିଲ
କହୁ କୋଳେ ନେଲେ ଭୂଦେବ ଚୁମ୍ବି ଅଧର ଫୁଲ୍ଲ । ୮

ସର୍ପ ଧୃତ ଗନ୍ଧ ମୂଷିକ ବକ୍ତ ନାଗଶ୍ୱର
ଝପିଲେ ତୁମ୍ଭର ସୁହୃଦ ପଦ୍ମ ନାଗେଶ୍ୱର ବଁର । ୯ ।
ଦ୍ୱାରକା ମଣ୍ଡଳା ଖଣ୍ଡଳ ଚିଦାନନ୍ଦ ମରତ
ଫେରନ୍ତେ ନାହିଁକି ଶୁଣିଲେ ନାଥ ଅମ୍ଭ ଦୁର୍ଗତି । ୧୦ ।

ମହ୍ମା ସୁର ମଣି ସୁଦାମ ଭକ୍ତ ମସ୍ତକ ମଣି
ତନୁ ପୁଲକିତ ଶ୍ରୀକୃଷ୍ଣ ନାମ ଜଣେ ରମଣୀ । ୧୧ ।
ଲୋମାଞ୍ଚିତ ମୋଦ ଗଦ୍‌ଗଦ କଣ୍ଠେ କହେ, ହେ ହର ।
ଉଦ୍ଧର ଏ ଭବ ସାଗରୁ ଦେଇ ଶ୍ରୀପଦ ତରୀ । ୧୨ ।

ସତୀ ଶିରୋମଣି ସୁମତୀ ମନ ବଢ଼ିବା ଅଶେ ।
ଭକତ ବନ୍ଦନ ବୋଇଲେ ବ୍ୟାଜେ ଉଦାର ସ୍ୱରେ । ୧୩ ।
ଉପର କରିବ ଦର୍ଶନ ନବଘନ ବରନ ।
ନୟନ ସଫଳ କରିବ କହ ବାଳୀ ରତନ । ୧୪ ।

ପର ଚନ୍ଦ୍ରହାସୀ ତରୁଣୀ ସ୍ୱରେ ଦ୍ୱାରକାପୁର
ଯାଇ କର ମିଳ ଦର୍ଶନ ଦୁଃଖ ହୋଇବ ଦୂର । ୧୫ ।
ଶୈଶବ ସୁହୃଦ ମୋର ସେ ଦୀନବାନ୍ଧବ ହରି
ରେ ଜୀବନଧନ ଚିହ୍ନିବେ ଅବ କହ କପର । ୧୬ ।

ହୃଷୀକେଶ ଅନ୍ତର୍ଯାମୀ ସେ ପ୍ରଭୁ ଜଗତପତି
ଚିହ୍ନିବେ ନିଶ୍ଚୟ ନାଥ ହେ ଗଲେ ତାହାଙ୍କ କତି । ୧୭ ।
କହୁଥି କପର ଦ୍ୱାରକା ପତି ସୁହୃଦ ମୁହିଁ
ହସିବେ ନାହିଁକି ଦେଖିଲେ ମୋ ରୂପ ସେ ସୁମୁହିଁ । ୧୭ ।

ରୂପ ମୂର୍ଖ ଖଳ ମଣ୍ଡଳ ଗୁଣ ମୁଗ୍ଧ ସୁଜନ
ନାରକେଳ ମହାକାଳର ହୁଅଇ କି ତୁଳନ । ୧୮ ।
ରାଜ ଦୁର୍ଗେ ଲୁଚ୍ଚେ ଶିକାରୀ ଶ୍ୱାନ ପର ଥାଅନ୍ତି
ଅଗନ୍ତୁକ ଜନେ ଦେଖିଲେ ବାଘ ପର ଗୃହାନ୍ତି । ୧୯ ।

ଦେଖନ୍ତୁ ବା ନ ଦେଖନ୍ତୁ ସେ ଦୋଷ ନୃଶଂସଗଣ
ଭୋକଇ କୁକୁରେ ଗଜସ୍ୱେ ଚଳିବାର ରଚନ । ୨୦ ।
ବନାଇଲେଁ ସ୍ୱଜ ସେବକେ କେବେ ବଶ ନୁହନ୍ତି
ଧନହୀନ ଜନ ଦୂରରୁ ଦେଖି ଡଙ୍ଗ ଦିଅନ୍ତି । ୨୧ ।

ସୂକର ଗୁଡାକ ନାଥ ହେ ନୁହନ୍ତି କାହାର
ଯଦ୍ଧ ପ୍ରଭଞ୍ଜନ ସଂଯୋଗେ ସ୍ୱସ୍ୱପର୍ଣ୍ଣ ପ୍ରଚାର । ୨୨ ।
କଦାକାର ଧୂଳାଧୂସର ଜୀର୍ଣ୍ଣ ଶୀର୍ଣ୍ଣ ବସନ
ଦେଖି ଶଙ୍କି ବେଙ୍କି ସଖିରେ ମୋତେ ବିଶ୍ୱମୋହନ । ୨୩ ।

କେଦାରେ ଥିଲେ କି ନଳିନୀ ନ ଦେଖନ୍ତି ତା ରତି
ନବ ନୀରଦ କି ଗୃହକୁ ମୂର୍ତ୍ତେ ବରଷେ ପଡ଼ି ? । ୨୪ ।
ସ୍ୱଚ୍ଛନ୍ଦେ ଭୋଗୀ ହେଲେଣି ସଖୀ ମୋହର ସଖା
ଲେଖା କରିବେକି ସୁହୃଦପଣେ କଲେ ମୁଁ ଦେଖା । ୨୫ ।

ଲକ୍ଷର ନୃପତି ସ୍ୱରୂପ ନୁହନ୍ତି ସେ ଶ୍ରୀପତି
କୃଷ୍ଣପ୍ରାପ୍ତ ମଣିଥିବେ ସେ ଦ୍ୱାରାବତୀ ସମ୍ପତ୍ତି । ୨୬ ।
ହେଲେ କେବେ ସଖା ଦର୍ଶନେ ଯିବ ମୂର୍ଦ୍ଧ୍ନ ନିକର
ମଣିରୂପେ ଶିରୋଭୂଷଣ କର ବାଣୀ ତୋହର । ୨୭ ।

ବହୁଦିନ ହେଲା ମାତର ନାହିଁ ସଖା ଦର୍ଶନ
ଶୂନ୍ୟହସ୍ତେ ଯିବ କପର ବଳୁନାହିଁ ତ ମନ । ୨୮ ।
ନାଥ ନାଥ ଅଛି କୁଟୀରେ ଦଳା ତଣ୍ଡୁଳ ମାଣେ
ତାହା ସ୍ନେହ ସଖା କରନ୍ତି ବାଲକାଳୁ ମୁଁ ଜାଣେ । ୨୯ ।

ପାଗଳିନୀ ହୋଇ ଗଲଣି କାନ୍ତେ ଜୀବନ ଧନ !
ଗ୍ରହଣ କରିବେ ତାହା କି ଦ୍ୱାରାବତୀ ମଣ୍ଡନ ? । ୩୦ ।
ଅଂଶୁଷ ରତନେ ପୂରିତ ହୋଇଲେହେଁ ସାଗର
ଅଞ୍ଜଳି ସଲିଳ ଧାରିକୁ କରେ କି ଅନାଦର ? । ୩୧ ।

ଯୋଷା ଛଟେ ତୋଟେ ବାହାର ହେଲେ ଭକତବର
କଣ୍ଠର ଦଣ୍ଡହିଁ ମଣ୍ଡିଛି ମାନ ଦକ୍ଷିଣ କର । ୩୨ ।
ସୁମତୀ କୁ ମାଗୁ ବିଦାୟ ପଦେ ନମିଲେ ସତୀ
ସଖୀ ଦରଶନ ଲାଳସେ ଭକ୍ତ ଚଳିଲେ ଗତି । ୩୩ ।
ବିଷ୍ଣୁ ଦରଶନ ତୃଷ୍ଣାକୁ ସଦା ପୋଷି ହୃଦରେ
ଭୂଦେବ ମାଧବ ନମଇଁ ତାଙ୍କ ପଦ୍ମପାଦରେ । ୩୪ ।



## ତୃତୀୟ ସର୍ଗ

### ରାଗ ଚକ୍ରକେଳୀ

ଜୟ ଜଗଦୀଶ ଦୁଃଖ ମୋଚନ, ଜୟ ଅମଳ କମଳ ଲୋଚନ । ୧ ।
ଜୟ ସୁମନସ ବୃନ୍ଦ ବନ୍ଦନ, ଜୟ ଭକ୍ତ ହୃଦ ତାପ-ଚନ୍ଦନ । ୨ ।
କହ୍ନ, ଭକ୍ତଗତ ରଥ ସଧୀରେ, ପରବେଶ ହେଲେ ତଟିନୀ ତୀରେ । ୩ ।
କଲ୍ଲୋଳିନୀ କଳ କଳ ନାଦିନୀ, ମନ୍ଦର ଧର କନ୍ଦର ଭେଦିନୀ । ୪ ।
ଅଶୁଗ ବେଗେ ଚଞ୍ଚଳ ତରଙ୍ଗେ, ଧାଉଁଛି ଜଳରାଶି ନାନାରଙ୍ଗେ । ୫ ।
ନଭେ ମଣ୍ଡଳ ଘୋଟିଛି ମୁଦିର, ମନ୍ଦ୍ର ଗର୍ଜନ କରଇ ଭଦୁର । ୬ ।
ଚଳା ଚପଳା ମାଳା ଝଲକଇ, ପ୍ରଚଣ୍ଡ ବାତ ସବେଗେ ବହଇ । ୭ ।
ଏ ସ୍ଥିତି ଦେଖି ଭକତ କାତରେ, ନାରାୟଣଙ୍କୁ ଚିନ୍ତିଲା ଅନ୍ତରେ । ୮ ।
ନମୋ ହେ ଦେବ କମଳ ଲୋଚନ, ପୂର୍ଣ୍ଣହେଲା ମୋ ତବ ଦରଶନ । ୯ ।
କରିବାକୁ କରଗତ ଗଗନ-, ମୁନିଙ୍କୁ ବାମନ କଲ୍ପ ମନ । ୧୦ ।
ସୁମତୀ ପାଶେ କି ବୋଲି ଭାଷିବି, ସଖୀରୂପ ଧ୍ୟାୟି ଜଳେ ଝାସିବି । ୧୧ ।
ଏପରି ବିଦଗଧ ହୃଦେ ବିପ୍ର, ଚିନ୍ତୁ ଚିନ୍ତାମଣି ମାନସ କ୍ଷିପ୍ର । ୧୨ ।
ପରିହାସେ ଭାଷିଲେ ସିନ୍ଧୁସୁତା, ବରଷି କାଶ ହାସରେ ମୁକୁତା । ୧୩ ।
ସୁବ୍ରତ ସଙ୍କେତ ପରି ନିଷ୍ଠୁର, ମନ ତୁଷ୍ଟ କୃପା ରସ ସାଗର । ୧୪ ।

ତେମନ୍ତ ନୁହେଁ ଜଗଦୀଶ ଶୁଣ, ବାଲ୍ୟ ସଖା ଅଟୁଛନ୍ତି ମୋ ପ୍ରାଣ ।୧୫
ମୋ ସଖା ପଥେ କରୁଛନ୍ତି ଭୟ, ଯାଉଛି ତାଙ୍କୁ ହୋଇବ ସହାୟ ।୧୬।
କର୍ଣ୍ଣଧାର ବାଳକ ରୂପଧର, ମିତ୍ର ପାଶେ ପ୍ରବେଶ ହେଲେ ହର । ୧୭
ଚହିଁ ଦୁଃଖୀ ପୁଲକେ ଭକ୍ତବର, ବୋଇଲେରେ କଇବର୍ତ୍ତ କୁମର ।୧୮।
ବାଳକ ତୁ ବାହିରେ ଜୀର୍ଣ୍ଣ ତରୀ, ନଦୀପଦେ ଦେବୁ ତ ପାର କରି ।୧୯।
ଅଛି ଏ ପର ଜୀବକା ଅମ୍ଭର, ଟଙ୍କା ଏଥିକି କାହିଁକି ତୁମ୍ଭର । ୨୦ ।
ବୋଧି ଅଶ୍ୱାସି ବିପ୍ରଙ୍କୁ ବସାଇ, ତରୀ ତୀରୁ ଧୀରେ ଦେଲେ ଖସାଇ ।୨୧
ନଦୀ ମଧ୍ୟେ ନାବ ହେଉଁ ପ୍ରବେଶ, ଭୁବନାନନ୍ଦ କୌତୁକେ ଅଦେଶ ।।
ଅନୁପାୟ ହୋଇଲ ଦ୍ୱିଜବର, ତବ ଇଷ୍ଟଦେବ ଏବେ ସୁମର । ୨୩ ।
ଶୁଣି କମ୍ପିଲ ବିପ୍ର ଅପଘନ, ଉଚ୍ଚେ ଡାକିଲେ ହେ କଞ୍ଜ ଲୋଚନ ।୨୪
ନବ ନୀରଦ ବରନ ହେ ହରି, ନଦୀ ଜଳୁ ଉଦ୍ଧର ଜୀର୍ଣ୍ଣ ତରୀ ।୨୫।
ନିର୍ଦ୍ଦୟ ହେଲେ ତରୀ ବୁଡ଼ି ଯିବ, ଦେଖି ନ ପାରିବ ମୁଖ ରାଜୀବ ।୨୬।
ବ୍ୟର୍ଥ ହୋଇବ ମୋ ଶ୍ରମ ସକଳ, ନ ଦେଖିଲେ ଥରେ ମୁଖ କମଳ ।୨୭
ହେ କୃଷ୍ଣ ହେ ସଖା ଅଗତି ଗତି, ବାରେ ଶୁଣ ଦୀନ ବିପ୍ର ବିନତି ।୨୮।
ଭକ୍ତ ପରୀକ୍ଷା କରି ତରୀ ତୀରେ, ଲଗାଇ ବିପ୍ର ଗମିଲେ ସୁଧୀରେ ।୨୯।
ସଖା ଶବ୍ଦେ ଶୁଣି ସ୍ୟନ୍ଦନ ଗଣି, ଗଲେ ସୁମରି ଭକତ ବନ୍ଧନ ।୩୦।
କିଛି ଦୂରେ ପଡ଼ିଲା ଘୋରବନ, ଅତି ଭୟଙ୍କର ସ୍ଥଳୀ ନିର୍ଜନ ।୩୧।
ନିବିଡ଼ ଛଦନେ ତା ଅଚ୍ଛାଦିତ, ତଳେ ନୋହେ ରବି କର ପତିତ ।୩୨
ଘନ ବରନ ତମାଳ ଛଦନ, ଚହୁଁ କେକୀଏ କରନ୍ତି ନର୍ତ୍ତନ ।୩୩।
ରଙ୍ଗେ କୁରଙ୍ଗ କୁରଙ୍ଗୀ ଧାବନ୍ତି, ବନ୍ୟା କରଭ କରଣୀ ଲେଉଡ଼ନ୍ତି ।୩୪।
ପଥେ ପଥେ ଶ୍ୱାପଦ ପଦ ଚିହ୍ନ, କରନ୍ତି ବୃକ୍ଷେ ବଲ୍ମୀକ ଶୋଭନ ୩୫।
ଚହିଁ ଭକ୍ତବର ହୋଇ କାତର, ବୋଲେ ଉଦ୍ଧର ହେ ଭକ୍ତ ସୋଦର ।।
ଭୟ ନାହିଁ ମୋ ଯିବାକୁ ଜୀବନ, ଥରେ କରାଅନ୍ତି ତବ ଦର୍ଶନ ।୩୭।
ଦେଖା ଦିଅ ହେ ସଖା ଅସି ଥରେ, ମରିବା ଅଟୁଁ ଏ ବନ ପଥରେ ।।
ଅହେ କୌସ୍ତୁଭ ଶାରଙ୍ଗ ଭୂଷଣ, ଦାସେ ଦିଅ ଭଲ ଥରେ ଦର୍ଶନ ।୩୯

ଜୟ ଜଗବନ୍ଦନ ଜଗନ୍ନାଥ  ତବ ନୟନ ଜନମ ମୋ ସାର୍ଥ ।୪୦।
ଚିନ୍ତି ଦ୍ୱାରକା ନାଥ ଅନ୍ତର୍ଗତେ, ଯାଇଁ ଭେଟିଲେ ଯତି ଏକ ପଥେ ।୪୧
ଜେନ ଚୂଡ଼ ମୃଗାଜିନ ଆସନେ, ବସି ଅଛନ୍ତି ଉତ୍ତର ବଦନେ ।୪୨।
ଶିରୋଦେଶେ ଜଟ.ଜୂଟ ମଣ୍ଡନ, ଅପାଦ ମସ୍ତକ ଭସ୍ମ ଲେପନ ।୪୩।
ଦକ୍ଷିଣ କରେ ରୁଦ୍ରାକ୍ଷ ତଳପ, ରୂପ ଶଜିତ ଅଲେଖ୍ୟ ନନ୍ଦଉ ।୪୪।
ନିର୍ବିକାର ନିସ୍ପୃହ ବନୌକାଏ, ଜାଣି ଭକ୍ତବର ପ୍ରଣମି ପାଏ ।୪୫।
ଯତି ଧ୍ୟାନ ଭଙ୍ଗ କରିବା ଅନ୍ତେ, ପୁଛିଲେ ତାହାଙ୍କୁ ବିନୟ ଭାବେ ।୪୬।
ମାତ୍ର ସେ ନଦେଲ କିଛି ଉତ୍ତର, ନାମାବଳୀ ଫିଙ୍ଗି ହେଲେ ଅନ୍ତର ।୪୭
ନିଜକୁ ତୁଚ୍ଛ ମଣି ଭକ୍ତବର, ଚଉଦିଗେ ଗୃହୁଁ ହେଲେ କାତର ।୪୮।
ପୁଣି ଭାବିଲେ ଦେଖି ମୋ ଦୀନତା, ବାସୁଦେବ ନେଲେ ବସ୍ତ୍ର ଗ୍ରନ୍ଥିତା [illegible]
ଅନ୍ତର୍ଯ୍ୟାମୀ ନିଶ୍ଚୟ ତପସ୍ୱୀ, ବିପ୍ରବର ଭକ୍ତ ହେଲେ ପଥଶ୍ରମୀ ।୫୦।
ଦ୍ୱାରବତୀ କଟକରେ ପ୍ରବେଶ, ଚିନ୍ତି ଶିର-ଚିହ୍ନ ଜେମା-ଜୀବେଶ ।୫୧।
କୃଷ୍ଣ ମାନସ ହର ଦରଶନେ, ମାଧବ ଚନ୍ଦ୍ର ବିପ୍ରବର ମନେ ।୫୨।

●

## ଚତୁର୍ଥ ସର୍ଗ

ରାଗ—ଚୋଖୀ

ପୁରନ୍ଦର ପୁରନ୍ଦର   ପୁରହୁଁ ଜାଣି ସୁନ୍ଦର,
ଧରଣ ଅଜ ନଗର ସେ କଳାକର;
ସେ ନଗରୀ ଶିଳ୍ପକଳ୍ପ   ବିଶ୍ୱକର୍ମା କଳ୍ପକଳ୍ପ
ବସି ବିଲୋକିଲେ ହେବ କଳ୍ପ କଟକ,
ନାମ ଦ୍ୱାରବତୀ କଟକ
ଦଶ ଦିଗନ୍ତ ବଳ ବ୍ରହ୍ମେ ଫଟକ । ୧ ।

ଭବ ଅଚର-ପାଳିନୀ ସିନ୍ଧୁ କେମା କମଳିନୀ
ବୀଣା ବିନୋଦିନୀ ବାଣୀ ଦେବୀ ରମଣ
ଧର୍ମ-ଅର୍ଥ କାମ-ମୋକ୍ଷ ଦାୟକ ସ୍ୱର୍ଣ୍ଣସ୍ୱୀକାନ୍ତ
କାମନା କଳପତରୁ ବିଶ୍ୱକାରଣ
ଯେଉଁପୁରେ ବିରାଜମାନ
କେଉଁ ଗୁଣରେ କରିବି କାହା ସମାନ ? । ୨ ।

ହେ ପ୍ରଭୁ ଦୁଃଖ ନାଶନ ଶେଷ ସୁପର୍ଣ୍ଣ ଆସନ
ସଖା ଆଗମନ ପଥ କରି ଲୋଚନ
ନବଘନ ଅପଘନ— ପୁଲକାଇ ଘନ, ଘନ
କଳ୍ପନା ନେନେ ବିଲୋକି ସଖା ବଦନ,
ବାର ବାର କର ପ୍ରସାରି,
ଆସନ୍ତେ ମିତ୍ର ଭାଷନ୍ତି ମୁରଲୀ ଧାରୀ । ୩ ।

'ଫୁଲ୍ଲେନ୍ଦୀ ବର ବଦନ ସର୍ବ ସୁନ୍ଦର ସଦନ
ପଦ୍ମ ପଲାଶ ଲୋଚନ ହେ ଦୟାମୟ !'
—କହୁ ଦୂର୍ଦ୍ୱାର ଦେଶେ ରଙ୍କ ଅଲକ୍ଷିତ ବେଶେ
ଦର୍ଶନ ଲାଳସେ ଭକ୍ତ ଦଗ୍ଧ ହୃଦୟ,
ଭୟେ ଚଳୁନାହିଁ ଚରଣ
ବକ୍ଷ ଥରି ବ୍ୟକ୍ତ ହେଉ ନାହିଁ ବଚନ । ୪ ।

ଦେଖି ବିପ୍ର ହୀନ ବେଶ, ହାସ ମିଶା ଉପହାସ—
ଭାଷି ରଚିଲେ ଗରବେ ଦ୍ୱାର ରକ୍ଷକେ,
କେଉଁ ଦେଶେ ତବ ବାସ ହେ ବିପ୍ର ଚପଳ ଭାଷ,
ବେଶେ ତ କରିବ ବଶ ବିଶ୍ୱ କ୍ଷଣକେ
ଶୁଣି ଭାଷେ ବିପ୍ର ଭୟରେ
ମୁଁ ଦ୍ୱାରକା ପତି,—ମିତ୍ର ବଖି ହୃଦରେ । ୫ ।

ଏ ବାଣୀ ଶ୍ରବଣେ କେହୁ    ଘଟେ ବାଳୁଙ୍କ କି ଏହୁ
କି କହୁଲ ବିପ୍ର ତୁହି ଦ୍ୱାରକା ପତି ?'
ରଙ୍ଗ ଦେଖି ହାସ୍ୟ ନେତ,    ଭୟେ ଯୋଡ଼ି କରପଦ,
ନା, ନା, ଜଣାଇଲେ ବିପ୍ର ହୋଇ ଅଗତି,
ବାଲ୍ୟ ସଖା ମୋର ଶ୍ରୀପତି
ଆସିଛୁ ଦର୍ଶନ ଆଶେ ତାହାଙ୍କ କତି ।୬।
ବ୍ରହ୍ମା ସଦାଶିବ ଇନ୍ଦ୍ର    ବରୁଣ କୁବେର ଚନ୍ଦ୍ର
ପାଇ ନାହାନ୍ତି ସହଜେ ଯାହା ଦର୍ଶନ
ଦୀନ ହୀନ ତୁ ବ୍ରାହ୍ମଣ    ହୋଇ କରୁଛୁ ଘୋଷଣ,
ଦ୍ୱାରକାପତି ସୁହୃଦ ବୋଲି କେମନ ?
ବୋଲେ ବିପ୍ର ମୁଁ 'ଦୀନ' ଅତି
ସେହୁ କର୍ତ୍ତା 'ଦୀନ-ବନ୍ଧୁ' ପଣ ଶ୍ରୀପତି । ୭ ।
ଯାଅ ଏ ସ୍ଥଳୁ ବାହାର    ବୋଲନ୍ତେ ତାଙ୍କୁ ପ୍ରହରୀ
ବାରଣ କଲେ ଆଗକୁ ଗମିବା ପାଇଁ,
ଧରାଦେବ ଧରାତଳେ    ଗଡ଼ି ରୋଦିଲେ ବିକଳେ
ସଖା ସଖା ସଖା ବୋଲି କାତର ହୋଇ
ଭକ୍ତ ଦୁଃଖେ ପଙ୍କଜ ମୁଖ
ପଡିଲେ ପଲଙ୍କ ଅଙ୍କୁ ହୋଇ ବିମୁଖ । ୮ ।
କେଶ ବାସ ଅସମ୍ଭାଳ    ଦ୍ୱାରକା ପୁର ଭୂପାଳ
କେଶରୀ ବେଗରେ ପରବେଶି ସତ୍ୱରେ
ଅବନୀ ଲୁଣ୍ଠିତ ମିତ୍ର—    କରଧର ଶତ ପତ୍ର—
ନେତ୍ର ଉଠାଇ ମିଳନ କଲେ ଗାଢ଼ରେ
ଗଙ୍ଗା ଯମୁନାଙ୍କ ମିଳନ, ଘନକୋଳେ କି ଚତୁର୍ଥୀ ଚନ୍ଦ୍ର ଶୋଭନ
ତର ଅକିଞ୍ଚନ ଧନ—    ପାଇଲା ପର ବହନ
ପୁଣି ନେଲେ ସୁହୃଦଙ୍କୁ ପୁରୁଷୋତ୍ତମ,

ମିଷ୍ଟ ବଚନେ ବୁଝାଇ, ରତ୍ନ ଆସନେ ବସାଇ
ଚମ୍ଭୈ ପଗୃର ଦେଲେ ସବ ଉତ୍ତମ
ମାଧବ-ସଂମ୍ପୃକ୍ତ-କମଳ—
—ପଦ-ଦ୍ୱନ୍ଦ୍ୱ ହେଉ ମାଧବର ସମ୍ବଳ । ୧୦ ।



## ପଞ୍ଚମ ସର୍ଗ

ରାଗ—ବଙ୍ଗଳାଶ୍ରୀ

ଅମଳ କମଳ— ନୟନ କୋମଳ—
କରେ ଧରି ସଖା କର,
ରତନ ପୀଠରେ ଯତନେ ବସାଇ,
ଧଉତ କଲେ ପୟର । ୧ ।
ନିଜ ପରିଧାନ ବସନେ ଶ୍ରୀହରି
ପୋଛି ଦେଇ ମିତ ପଦ,
ବୋଇଲେ 'ମୁଁ ଧନ୍ୟ, ଧନ୍ୟ ହେଲା ଆଜ
ମୋର ଦ୍ୱାରକା ସଂପଦ,
ଭୁବନ ସୁନ୍ଦର ବୃନ୍ଦା ପୁରନ୍ଦର
ପୁଛନ୍ତି ମୃଦୁଳ ହାସେ
'କଣା ହୋଇ ସଖା ଗୃହୁ ଆସିଲୁ କି ?
ଆଜ ଏ ଦୀନ ନିବାସେ ?'
ଧବଳ ଚାମର ବ୍ୟଜନ ତାମ୍ବୁଳ
ଘେନି ଅଷ୍ଟ ପାଟରାଣୀ,
ସେବନ୍ତି ମିତ ପଦେ ଢାଳନ୍ତି ସଧୀରେ
ଭାଷେ ପୀୟୂଷ ବରଷି । ୨ ।

ଅଲେଖ୍ୟ ପ୍ରତିମା ସ୍ୱରୂପ ସୁଦାମା
ଯାହେ ସୁମତ ଭାରତୀ
ତୋହ ପାର୍ଶ୍ୱ ବିନା ଅପରାଧ ହେଲା
ପଦ ସେବିଲେ ଶ୍ରୀପତି,

ଜଗତ ଜନନୀ ବସ୍ତ୍ର ପାଟ ରାଣୀ
ଧରି ଅଛନ୍ତି ଚାମର,
ଅଷ୍ଟ ପାଟ ରାଣୀ ମନେ ପରଶଂସ
ବନ୍ଦନ୍ତି ପଦେ ମୋହର,

ସୁନାଶିର-ଶିର- ମୁକୁଟ ରତନ
ଲୋଟଇ ଯା ପଦତଳେ
ସେ ଦୁଃଖ ମୋଚନ କମଳ ଲୋଚନ
ମୋ ସେବା କରନ୍ତି ବଳେ । ୭ ।

ଅପବନ୍ ନପା- ଘର୍ମ ପଡେ ଚୋପା,
ଚୋପା ହୋଇ ପଲଙ୍କରେ
ମିହ ମିହ ଭାଷି ସୁନ୍ଦର-ସୁନ୍ଦରୀ
ପୋଛି ଦିଅନ୍ତି ଶୀତରେ । ୮ ।

ଅପଲକ ନେତ୍ରେ ସୁଧାର୍ଦ୍ଦ ନିଃଶ୍ୱାସେ
ବସି ରୂପ ଚୂଡ଼ାମଣି
କଏ ମୁ କେଉଁଠି ଜାଣି ନ ପାରଇ
ଯଥା ଦୁର୍ଗେ ବନ ବଣୀ । ୯ ।

ଥର ଥର ଥରୁ- ଅଛି ଅପବନ,
ବଚନ ମୁଖେ ନ ସ୍ଫୁରେ,
ସୁହୃଦ ଅନ୍ତର ଜାଣି ଅନ୍ତର୍ଯାମୀ
ଭାଷିଲେ ହରଷ ଭରେ । ୧୦ ।

ପୂର୍ବ ସ୍ନେହ ସଖା ଭୁଲି ଗଲଣିକି ?
ଅବା ବନ୍ଧୁଅଛ ବେଢି ?
ସେସ କାରଣ୍ୟ ଭୃତ ନ କର ପ୍ରକାଶ
କହ କରିଛି କି ଦୋଷ । ୧୧ ।

ଦାରସ୍ଥ ୁଟ ବାଣୀ ଜାଣିଲେ ଭୁଦେବ
ଅପଣ ଗୁଣ ସାଗର
ଗୁଣ ସ୍ଥାନେ ଅବ ଦୋଷ ବହଇ କି
ହେ ପ୍ରଭୁ କରୁଣା କର ? । ୧୨ ।

ମିନ କର ଧର ଭାଷନ୍ତି ଶ୍ରୀହରି
'ପୂର୍ବ ସ୍ନେହ ଭୁଲି ଗଲି
ଅଜ ରେ କହାଇ— ତାକ ଭୁଲି ଯାଇ
ଅପଣ ବୋଲି ଭଣିଲି । ୧୩ ।

ସକାନ୍ତି ନା ସଖୀ ମୋ କଥା ମନରେ,
ଥାଏ ନା ତୁମର ମନେ,
କେଉଁ ଭାଗ୍ୟବଳେ କୃତାର୍ଥ ହୋଇଲି
ଅଜି ତବ ଦରଶନେ । ୧୪ ।'

ମୋହ ଭାଗ୍ୟ ବିନା ଦଶିଲୁ ହେ ପ୍ରଭୁ !
ଦେଖିଲି ତବ ଶ୍ରୀମୁଖ
ଦରଶନ ବେଳୁ ପାଶୋର ଗଲିଣି
ଜନ୍ମ ଜନ୍ମାନ୍ତର ଦୁଃଖ । ୧୫ ।

ଗୁରୁ ଭବନର ବାଲ୍ୟ ଘଟନା—
ରହିଛି କି ସଖା ମନେ ?
କେବେ କ୍ରୀଡାରତ- ତୁକ ହାସ-ଭାଷେ
ବଳସୁ ଥିଲେ କାନନେ— । ୧୬ ।

ବକ୍ଷ ପଟେ ତବ ଅକ୍ଷୟ୍ୟ କୌସ୍ତୁଭ
ଅକ୍ଷରେ ଅକ୍ଷରେ ଲେଖା
ହେ ଭୁବନା ନନ୍ଦ ! କଳ୍ପନା କାନନେ
ନିତ ପାଏଁ ତବ ଦେଖା । ୧୭ ।

ତୁମ୍ଭର ବିଚ୍ଛେଦ ଘଟନାହିଁ ସଖା !
ଜୀବନେ ଘଟିବ ନାହିଁ ,
ଶୟନେ ସ୍ୱପନେ ମିଳେ ଦରଶନ
ଯେଉଁ ଦିଗେ ଦେଲେ ଚାହିଁ । ୧୮ ।

ସତ କହୁଛନା କହ୍ନୁ ଆଲିଙ୍ଗିଲେ
ଶ୍ରୀକୃଷ୍ଣ, ସୁଦାମ ଅଙ୍ଗେ.
ଦେଖି ମିତ ତନୁ ପୂରି ଉଚ୍ଛୁଳିଲା
ବଦନେ ହାସ ତରଙ୍ଗେ । ୧୯ ।

ସଖା ତୁମ୍ଭ କଥା ହୃଦ ଜପ ମାଳା
ନୟନୁ ପୋଛି ଦେଉଛି,
କୃତ୍ରିମ ନୃପତି ସମ୍ପଦ ବନ୍ଧୁରେ
ଯେଣୁ ବନ୍ଧନ ହୋଇଛି । ୨୦ ।

ଦାଅ, ଦାଅ, ସଖା ! କି ଦେଇ ଅଛନ୍ତି
ମୋହର ସୁମତି ସଖି,
କପଟ କରଣ ନ ଦେଇ, ଲୁଚାଇଁ
ଗୋପନେ ତା ଅଛ ରଖି ? । ୨୧ ।

ଲଜ୍ଜାବଶେ ମ୍ଳାନ ଚଉଳ ଗଣ୍ଠି ତା
ବଳେ ନେଲେ ଚକ୍ରଧର,
ଅଧୋ ବଦନରେ ବସି ଭକ୍ତମଣି
ହୋଇଗଲେ ନିରୁତ୍ତର । ୨୨ ।

କହୁଇ ଅନ୍ତର          କ୍ଷୀର ସୁର ସର
ଜାତ୍ୟ ଯାହାର ଅଶନ,
ଲକ୍ଷ୍ମୀ ଚନ୍ଦ୍ରଙ୍କୁ          ଭକତ ବତ୍ସଳ
ସ୍ନେହେ କରନ୍ତି ଚର୍ବଣ ! ! । ୨୩ ।

ହାସ ଗଦ ଗଦେ          ଯାଚନ୍ତି ସଖୀଙ୍କ
କର-କମଳ ବନ୍ଦନ
ବହୁତ ଦିନରୁ          ପାଇ ମୁଁ ନ ଥିଲି
ଧନ୍ୟ ଆଜ ମୋ ଜୀବନ । ୨୪ ।

ବଣ୍ଟ ଅଳ ଦାସୀ          କ୍ଷୀର ସିନ୍ଧୁ ସୁତା
ଧଇଲେ ସେ ତାଙ୍କ କର
ସଖୀଙ୍କ ଦ୍ରବ୍ୟରେ          ଅମୃତ ସ୍ୱାଦ ! କ
ନାହିଁ କରୁଣା ସାଗର ? । ୨୫ ।

କହୁ କଉତୁକେ          କମଳ-ଆସନା
ଘେନିଗଲେ ହସ୍ତ ଧରୁ
ମଣୋହି ସଜ୍ଜାରେ          ମିଶ କର ଧଇ
ପୁରେ ଗଲେ ମହାମେରୁ । ୨୬ ।

କନକ ପୀଠକେ          ବସୁ ଦେଲ ମିଶ
ଷଡ଼ରସ ଦ୍ରବ୍ୟ ମାନ
ଜଗତ ପାଳନୀ          ପରଶି ଦିଅନ୍ତି
କହୁ କୌତୁକ ବଚନ । ୨୭ ।

ଭୋଜନ ଶେଷରେ          ଦିବ୍ୟ ସୁପାତ୍ରରେ
ପ୍ରବେଶାଇ ବସ୍ତ୍ରଦରେ
ବାଲ୍ୟକାଳ କଥା          କହୁ କହି ଭାଇ
କଟାଇଲେ ଆନନ୍ଦରେ । ୨୮ ।

ବେଳ ମିଳ କମେ ମିଳନ ହୁଅନ୍ତେ
ଆଦେଶ ମାଗି ଶ୍ରୀଧର
ମାଧବ କହଇ ଅନ୍ତଃପୁରେ ଯାଅ
ଲକ୍ଷ୍ମୀ ସହ ଭଞ୍ଜଧର । ୨୯ ।



## ଷଷ୍ଠ ସର୍ଗ

ରାଗ—ମଙ୍ଗଳ ଗୁଜ୍ଜରୀ

ସୁନ୍ଦର ଭଟନେ ଶୋଣ ବରଣ ଚେଳ-
ମଣ୍ଡି ହୋଇ ବାରୁଣୀରେ ରଚିଲେ ଖେଳ । ୧ ।
ବୃକ୍ଷ ଉପରକୁ ଗୃହଁ ବିହଗ ଗଣ
ଜଗ ଭାବେ ମନୋ ଭାବ କଲେ କଥନ । ୨ ।
ଗୃହଁ ଗୃହଁ ଚନ୍ଦ୍ରାତପ ଦେଲା ଗଗସି
ନଭେ ଉଜ୍ଜ୍ୱଳେ ଶୋଭିଲେ ନକ୍ଷତ୍ର ରାଶି । ୩ ।
ଧୀରା ଅବନୀ ଦେବୀ କି ରତ୍ନ ହଜାଇ
ଭଣଇ ଯତନେ ରଜତକୁ ସଜାଇ । ୪ ।
ସୁର-ପୁର-ଶିର କର ହେଉଁ ଦୁର୍ବଳ
ନିର୍ଜନେ ବୁଲିଲେ ରାତ୍ରି ଭୌତିକ ଖଳ । ୫ ।
ସୁଜନ ପଛେ ଗର୍ଜନ୍ତି ଯଥା କୁଜନେ
ଶାର୍ଦ୍ଦୂଳ ପଛେ ବୁଲଇ ଶ୍ୱାନ ଯେସନେ । ୬
ସେ କାଳେ କ୍ଷୀର-ସାଗର ନନ୍ଦନୀ ହାସ
ପ୍ରକାଶି ବୋଇଲେ ନାଥ ଶୁଣ ମୋ ଭାଷ । ୭ ।
ତବ ମିଳ ମନୋହାରୀ ଦର୍ଶନେ ମନ
ହେଉଛି କାତର ହେବ ନାଥ ! ମିଳନ । ୮ ।

ଉଦାରେ କହନ୍ତି ବସି ତାଙ୍କ ନଗରେ
ହାସ ପ୍ରସଙ୍ଗେ ରଚନ୍ତି ଭାଷ ରଙ୍ଗରେ । ୯ ।
ଦେଖିବ କପର ତାଙ୍କ ନବର ଛବି
ଅଦେଶ ଦଅ ମୋ ହୃଦ ଗଗନ ରବି । ୧୦ ।

ଜଳଦ ବରନ ଶ୍ୟାମ ସୁନ୍ଦର ହାସ—
ଫକ ଣି ଭାଷିଲେ ତାଙ୍କ କୁଠୀରେ ବାସ । ୧୧ ।
ଅନ୍ନ ବସନରେ ସଦା ମୋ ମିତ ଦୁଃଖୀ
ହୁସ୍ତ ୯ରତ୍ନ କରିବେ କେନ୍ଦ୍ରେ ସମୁଝି ! । ୧୨ ।
କର୍ପା ଏଡ଼େ ଦୀନ ଭବ ନାଥ ତାଙ୍କର
ବାଲ୍ୟ କାଳୁ ଅଲସୁଅ ସଖା ମୋହର । ୧୩ ।
ଉଦ୍ୟୋଗରେ ସବ କାମ ହୁଅଇ ସିଦ୍ଧି
ଉଦ୍‌ଯୋଗ ବିନା ପ୍ରାପତ ହୁଏ କି ? ନିଧି । ୧୪ ।

ଅନ୍ତର୍ଯାମୀ ହୃଷୀକେଶ ନାମ ନ ବହୁ
ଥିଲେ ଜୀବେଶ ଏକଥା ପାରନ୍ତି କହୁ । ୧୫ ।
ସଖାଙ୍କ କରମେ ଧନ ନାହିଁରେ ସହୁ !
ଅକରମା ଦାମୀ ନାମ ବହ କିପାଇଁ । ୧୬ ।

ଦରିଦ୍ର ହୁଅନ୍ତି ସହୁ ଭକତ ଲୋକେ
ଦୀନବନ୍ଧୁ ନାମ କିପାଁ ବୋଲଅ ଲୋକେ । ୧୭ ।
ତୁମ୍ଭେ ଅଣିମାଦି ଦାସୀ ଚନ୍ଦ୍ର ବଦନେ
କହିଦନ ବିଜେକର ମିତ ସଦନେ । ୧୮ ।

ସେ ଅଭିଳାଷେ ସୁମତି ଛନ୍ତି ପଠାଇ
ସେହୁ ଭାବ ଲେଶ ମିତ୍ର ହୃଦୟେ ନାହିଁ । ୧୯ ।
ସଖା ନୁହନ୍ତି ମୋହର ଧନାଭିଳାଷୀ
ଦୟାକଲ ଯେବେ ବିଜେକର ସୁହାସି । ୨୦ ।

କାନ୍ତ ଆଦେଶେ କମଳାଳୟା ଚଳିଲେ
ଭକ୍ତବର ପୁରେ ପରବେଶ ହୋଇଲେ । ୨୧ ।
ଭୂଦେବ ରମଣୀ କାନ୍ତ ସରଣୀ ଗୃହିଁ
ଅନଶନରେ ବହୁତ କଦନ ପାଇ । ୨୨ ।

ଅବନ୍ତୀ ପ୍ରାନ୍ତରେ ସର ସୋପାନେ ବସି
ବେଦନ କରୁ ଚଣ୍ଡଲା ମିଳିଲେ ଆସି । ୨୩ ।
ନାରୀ ରୂପ ଦେଖି ପରୁଷିଲେ ସୁଚଣ୍ଡ
କଏ ତୁମ୍ଭେ ରାତ୍ରେ ଏଥି ରହିଲ ଗଣ୍ଡ । ୨୪ ।

ମାୟାବିନୀ ମାୟା ଭ୍ରଷ୍ଟ କଲେ ପ୍ରକାଶ
ନୀଳାଚଳ ପୁର ଅଟେ ମୋହର ବାସ । ୨୫ ।
ଜନମ ସ୍ଥାନ ମୋହର କମଳ ପୁର
କ୍ଳାନ୍ତ ଲଭିଲଣି ଆସି ବହୁତ ଦୂର । ୨୬ ।

ଏକାକୀ ଲଳନା ମୁଁ ଯେ ସ୍ୱଧରେ ରାତ
ଭୟେ ଥର ଥର ମୋର ଥରୁଛି ଗାତ୍ର । ୨୭ ।
ଦୟାମୟୀ ମୋହ ପ୍ରତି ହୋଇ ସଦୟ
ଏ ରାତ୍ରିକ ଦିଅ ତୋର ପୁରେ ଅଶ୍ରୟ । ୨୮ ।

ଅତିଥିପ୍ରାଣା ପୁଲକ ମ୍ଳାନ ବଦନେ
ମାୟାବିନୀ ସଙ୍ଗେ ଘେନି ଗଲେ ସଦନେ । ୨୯ ।
କୁଟୀର କପାଟେ ଫେଇ ତୃଣ ଆସନେ
ବସାଇ ମୃଣ୍ମୟ ପାତ୍ରେ ଜଳ ବହନେ । ୩୦ ।

ଅଣି, ନମାନ୍ଦା ଧଉତ କଲେ ଚରଣ
ଅତିଥି ସକଳ ଗୁରୁ ! କହ ଚନ୍ଦନ । ୩୧ ।
ବସନ୍ତେ ପଳାଶ ଡାଳେ ବସନ୍ତେ ଜନେ
ଶଶୀ ତାରକା ଘଣନ୍ତ ଯେପନ୍ତେ ଗଗନେ । ୩୨ ।

ତଥା ମୁରେ, ଚକ୍ର ଦୃଷ୍ଟ ଯଥା ଶୋଭଇ
ଧନ ଯୌବନରେ ସଦା ବଞ୍ଚିତ ହୋଇ । ୩୩ ।
ତେବେ ଚନ୍ଦ୍ର ଏ ବୟସୁ ଦ୍ୱାରକା ରାଣୀ
ପଚାରିଲେ ଅଗୋ ତୁମେ କେଉଁ ପରାଣୀ । ୩୪ ।
ଧନ ଅଭାବ ପଡ଼ିଛି କଣା ତୁମ୍ଭର
କପଟ ଚଳ ଗୋ କହ କଥ ଉତ୍ତର । ୩୫ ।
ଇନ୍ଦୁ କମଳ ବଦନେ ଭ୍ରଷ୍ଟେ ସୁମତି
ଭଷା ଗଣ୍ଡୁଳରେ ବଞ୍ଚି ଅଛେ ଦମ୍ପତି । ୩୬ ।

ଲ—କେଉଁଣେ ଯାଇଛନ୍ତି ତୁମ୍ଭ କାନ୍ତ କାହାନ୍ତି
ସୁ—ଅଠଦିନ ହେଲା ଅଙ୍ଗୁ ଗୃହେ ନାହାନ୍ତି । ୩୭ ।
ଲ—ବିଦେଶେ ଯାଅନ୍ତି କିଗୋ କାନ୍ତ ତୁମ୍ଭର
ସୁ—ଅନ୍ନାଭାବେ ଯାଇଛନ୍ତି ମିତ୍ର ନଗର । ୩୮ ।
ଲ—କେଉଁଦେଶେ କିଏ ମିତ୍ର ଅଟେ ତାଙ୍କର
ସୁ—ଦ୍ୱାରକା ନୃପତି କୃଷ୍ଣ କୃପା ସାଗର । ୩୯ ।
ଲ—ଦୀନେ ଦୟା କରନ୍ତି କି ? ସେହୁ ନୃପତି
ସୁ—ଚରାଚର ପାଳକ ସେ ଅଗତି ଗତି । ୪୦ ।
ଲ—ରାଜା ସଙ୍ଗେ ତବ କାନ୍ତ ମିତ୍ର କିପରି
ସୁ—ବାଲ୍ୟକାଳ ସହାଧ୍ୟାୟୀ ଥିଲେ ତାଙ୍କର । ୪୧ ।
କଥୋପକଥନ ହେଉଁ ରମା ନୟନ
ମାଧବ କହଇ ବ୍ୟାଜେ ଢଳେ ସୁଜଳ । ୪୨ ।



## ୭ମ ସର୍ଗ

### ରାଗ—କଳହଂସ କେଦାର

ଅତଥି ସତ୍କାର କରି ନପାରି
ଜାଣିଥେ ଚନ୍ଦ୍ରାଭୁସ ସୁଦାମା ନାରୀ
ନାଦ ବଧୂକ, ଗଣ୍ଡେ ମଣ୍ଡିଲା ପାଣି
ତନ୍ତିଲା ବକ୍ଷ ବର୍ଷି ନୟନ ପାଣି । ୧ ।
ପୁଣି ଭାଳିଲା କାନ୍ତ ଅଷ୍ଟ ବାସର
ହେଲା ପାଶରୁ ମୋର ହେଲେ ଅନ୍ତର
ବିପଦ ପଡ଼ିଲଣି ପତିଙ୍କ ବନେ—
ଫେରୁ ବଧିଲେ ଅବା ପଥେ ସୂଦନେ । ୨ ।
କାଳ ମୁଁ କାଢ଼ିଥିଲି ଗୃହୁଁ ବଦନ
କରଣ କଲି କିକେ ଘୋର କଦନ
ପୁଣି ବୋଧିଲା ଚିର ସତୀ ଗରବେ
ପତିବ୍ରତା ବିଧବା ନୁହଇ କେବେ । ୩ ।
ନାରୀଧର୍ମେ ପୁରୁଷେ ନାହିଁ ବିପଦ
ନାରୀକର୍ମେ ମିଳଇ ଶତ ସମ୍ପଦ
କାନ୍ତା ପାତକ୍ରେ କାନ୍ତ ଲଭେ ବିନାଶ
ସପନେ ନାହିଁ ଆନ ପୁରୁଷେ ଆଶ । ୪ ।
ଅଙ୍ଗେ ମୋର ଯଦି ଥିବ କଳ୍ମଷ
ଘଟିବ ଯାହା ଭାଲେ ଥିବ ଅବଶ୍ୟ
ଅନଶନେ ଅତିଥି ରହିଲା ଘରେ
କି ପ୍ରୟୋଜନ ଅଛି ଯୋଡ଼ା ପ୍ରାଣରେ । ୫ ।
ଅବଧି ଘଟନାହିଁ ଏମନ୍ତ ବିଧି
କି ଅବା ମୋର ବାମ ହୋଇଲା ବିଧି

ଅତିଥି ଗୃହେ ଯାର ହୁଏ ନିରାଶ
ତାର ସର୍ବ ସୁକୃତ ହୁଅଇ ନାଶ । ୬ ।

ଯା ବ'ସେ ନ ପଡ଼ଇ ଅତିଥି ପଦ
କି ହେବ ଥା'ଇ ତାର ଇନ୍ଦ୍ର ସଂପଦ
ଅପେ କରଣ ଅନଶନ ବରତ
ଅତିଥି ମନ ଯେହୁ କରେ ତୃପତ । ୭ ।

ତାହାଙ୍କୁ ବୋଲି ଭବେ ସୌଭାଗ୍ୟବନ୍ତ
ତାରେ ସଦସ୍ତୁ ସଦା କମଳା କାନ୍ତ
ଧିକ ଗୃହସ୍ଥାଶ୍ରମ ଧିକ ମୋ ପ୍ରାଣ
ନୋହିଲା ଯା ଅତିଥି ତୋଷ ସାଧନ । ୮ ।

ଜଳେ ଝାସିଣ ତନୁ ପ୍ରାଣ ନାଶିବି
ଅତିଥି ନ ସେବିବା ପାପ ଖଣ୍ଡିବି
ଏତେ ଭାଳି ଭକତ ନାରୀ ଚଳିଲା
ସର ସୋପାନ ପାଶେ ଯାଇଁ ମିଳିଲା । ୯ ।

ଝଳେ ପଶନ୍ତେ ସ୍ୱାମୀ ନାମ ସୁମରି
ସରସୀ ତୀରେ ଆଇ ଡ଼ାକିଲେ ହରି
କିଏ ଜଳେ ପଶୁଛ ଚପଳ ଅସ
ଦେଖାଇ ଦିଅ ମୋତେ ସୁଦାମ ବାସ । ୧୦ ।

ସତୀ ସୁମତୀ ଫେରି କୂଳେ ଚାହିଁଲେ
ସାରଥିକ ଅଭୀର ରୂପ ଦେଖିଲେ
କିଏସେ ତୁମ୍ଭେ ଏତେ ରାତିରେ ଅସ
କହ ବଦନ ମୋର ସଂଶୟ ନାଶ । ୧୧ ।

ମୁହିଁ ଅଟେ ଅଭୀର ଘର ନନ୍ଦନ
ପେଶିଛନ୍ତି ସୁଦାମ ତାଙ୍କ ସ୍ୱଜନ

ବସ ଦ୍ୱାରକା ନୃପପୁରେ ଅଛନ୍ତି
ଖାଦ୍ୟ ପଦାର୍ଥ କିଛି ଦେଇ ଅଛନ୍ତି । ୧୨ ।

ଅତିଥିଙ୍କି ତୋଷିବା ସତୀ ଭାଳିଲ
ଅନନ୍ଦେ ସଙ୍ଗେ ଘେନି ଗୃହେ ଚଳିଲ
ଜଗଦୀଶେ ପ୍ରଶଂସା କରି ଅନ୍ତରେ
ଅଗନ୍ତୁକେ ତୋଷିଲ ହୃଷ୍ଟ ଚିତ୍ତରେ । ୧୩ ।

ଦେବଙ୍କ ପାଇଁ ତୃଣ ଶଯ୍ୟା ସଜାଇ
ଅନଗୃହେ ଶୟନ କଲ ସେ ଯାଇ
ନିଦ୍ରାଦେବୀଙ୍କି ସେଇ ରମା ରମଣ
ବୋଇଲେ ସତୀ ନେନେ ଘାର ବନ୍ଧନ । ୧୪ ।

ଅଜ୍ଞା ପ୍ରମାଣେ ନିଦ୍ରା ଦେବୀ ଚଳିଲ
ଅତିଥି ବତ୍ସଳାର ନେନେ ଘାରିଲ
ବିଶ୍ୱ କର୍ମୀଙ୍କୁ ଦେଲେ ଆଦେଶ ହରି
ପୁର ନିର୍ମାଣ ଏଥି ଦ୍ୱାରକା ପରି । ୧୫ ।

ଜଗଦୀଶ ଅଦେଶେ ରମ୍ୟ ନଗର
ବନ୍ଧି ହେଲେ ବାହାର ଶିଳ୍ପୀ ପ୍ରବର
ପୁରେ ପୁରେ ବିହରି ଗଲେ ଚଞ୍ଚଳା
ଧନ ଧାନ୍ୟ ରତନେ ତା ପୂରିଗଲା । ୧୬

ଯହୁଁ ଜଗତ ପିତା ମାତା କରୁଣା
ତହୁଁ କେଉଁ କଥା ବା ରହିବ ଊଣା
ସୁଦାମ ଅଜ୍ଞାତରେ ଦେଇ ସମ୍ପତ୍ତି
ସ୍ୱପୁରେ ଗଲେ ବିଶ୍ୱ ବର ଦମ୍ପତି । ୧୭ ।

ଦେଖଇ ସେ କାଳରେ ସ୍ୱପ୍ନ ସୁମତି
ଶ୍ୱେତ ଛତ୍ର ସୁନ୍ଦର, ଭ୍ରାଜ ଜଗତୀ

ସ୍ୱପନ ଦେଖି ଦେଖୁ ବାମାର ବାମ
ନେଶ ସ୍ଫୁର ଉଠେଇ ଯାମକୁ ଯାମ । ୧୮ ।

ଶୋଣ କୌଷେୟ ଭୂଷା ଉଷା ସେକାଳେ
କରିଲା ତପନକୁ କମଳ ମାଳେ
କାକ ଡାକିଲା ସୁମତୀର ପ୍ରାଙ୍ଗଣେ
ଭୁଞ୍ଜିଲା ଦୁଃଖ ସତ୍ତ କଠ ବନ୍ଧନେ । ୧୯ ।

କାକ ଡାକକୁ ଚେତ ଉଠିଲେ ସତୀ
ଦେଖିଲେ ପୁରନ୍ଦ୍ରେ କି ବାର-ସ୍ମୃତି
ଘରେ ପୁରେ କନକ ପଲଙ୍କ ରାଜେ
କନ୍ଦ ମଞ୍ଜୁଷ ସୁଧା ପୁରକୁ ସାଜେ । ୨୦ ।

ଧାନ୍ୟ ଅଗାର କେ କରିବ କଳନା
ଅବଧାନମାନଙ୍କ ନାହିଁ ତୁଳନା
ସତ୍ୟ କି ସ୍ୱପ୍ନ କିଛି ଅବଧାରଣ
କରି ନପାରି ବିସ୍ମୟରେ ମଗନ । ୨୧ ।

କୁହୁକ କାନନର ପଥିକ ପରି
ବିସ୍ମୟ ପାରାବାରେ ସତୀ ସନ୍ତରି
ଲୋଡ଼ି ବେନି ଅତଥି କାହିଁ ନପାଇ
ଭାଳିଲା ରମା ସଙ୍ଗେ ଜଗତ ସାଇଁ । ୨୨ ।

କପଟ ବେଶେ ଆସି ଜାଣି ମୋ ଦୁଃଖ
ଅନ୍ତର ହେଲେ କିଷ୍ଟେ ପଙ୍କଜ ମୁଖ
ଘର ସମ୍ପଦେ ବଳାଇଲି ମୁଁ ମନ
ଦେଖା ଦେଇ ନଦେଲେ ରମା ରମଣ । ୨୩ ।

ସଂପଦ ଆଶା ପୋଛି ପ.ପ ଅନ୍ତରେ
ହସାଇଲି ରତନ ଲୋଡ଼ଣ କଲେ

ଧିକ ମୋ ମନ ବୁଦ୍ଧି ବିବେକ ଧିକ
ଚେଞ୍ଜିଲି ସାରସ୍ୱତ ଭକ୍ତ ଅଳକ । ୨୪ ।
ଅହା ସେ ନର ନାସ୍ତି ଗଲେଟି କାହିଁ
ଅଜ୍ ବି ତାଙ୍କ ମୁଖ ଦେଖିବି ନାହିଁ
ଲୋଡ଼ା ନାହିଁ ମୋ ତାଙ୍କ ପ୍ରଦତ୍ତ ଧନେ
ସତେ ଦେଖିବି ଅଜ୍ ପାପ ନୟନେ । ୨୫ ।
ନଶୁଣି ଅଜ ତାଙ୍କ ସୁଧା ଭାରତୀ
ହେବି କି ଚିରକାଳ ଖେଦେ ଭରତ
କାହିଁ ଗଲ ମା ରମା ହେ ରମାଧବ
ବୋଲି ରୋଦିଲେ ବାଳୀ କହେ ମାଧବ । ୨୬ ।



## ଅଷ୍ଟମ ସର୍ଗ

ରାଗ—କାମୋଦୀ

ଦ୍ୱାରବତୀ ଗଗନ— ନବୋଦିତ ତପନ
କମଳା ହୃଦୟ ରଞ୍ଜନ
ପାଳେ ଭକତ ବର ଲକ୍ଷେ ଯୋଡ଼ଣ କର
ମୋ ବାଣୀ କରନ୍ତୁ ଶ୍ରବଣ ହେ
ଜଗଦୀଶ
ପୂତ ଦ୍ୱାରକା ଧରଣୀଶ
ଦୀନ କୁମୁଦ—ଯାମିନୀଶ
ସ୍ୱରେ ପିବା ଅଦେଶ ଦେବା ହେଉ ଦେବେଶ
ମୋ ହୃଦ ସରସୀ—ସାରସ । ୧ ।

ଧର ସୁଦାମା କର ଭାଷନ୍ତି ବେଣୁଧର
ନୁହେ କି ଏ ଘର ତୁମ୍ଭର
କୁହ ନା ଯିବା କଥା ଦାଅନା ହୃଦେ ବ୍ୟଥା
ହୁଅନା ସଖା ଡର ଡର ହେ
ବହୁଦାନ୍
ନଦେଖି ତୁମ୍ଭର ବଦନ
ରଙ୍କ ହୋଇଛି ମୋ ନୟନ
ଶର ତୃଷିତ ସ୍ତୋକ ମୂଖେ ସୁଧା-ଜଳଦ
ଦେଲ ଏ ଭଦ୍ରୁର ପଡନ । ୨ ।
ମାଟ ପିଚ୍ଛିଳା ବତ ଭକତ ପ୍ରମୀଳ
ହୋଇଲେ ଅଧୋ ବଦନରେ
ରନ୍ ବର ବରନ ଗୃହ୍ଣି ମିଜ ଲପନ
ବୋଇଲେ କି ଭାବ ମନରେ ହେ
ଭମଲେଶ—
ନନ୍ଦମା କୌତୁକ ବଚନ—
ହରଷେ କରିଲେ ଭଜନ;
ହୋଇଲେଣି ସୁମତ— ସଖା ପ୍ରୀତ ମୂରତି
ଲହିବେ କୁହନ୍ତୁ କେସନ । ୩ ।
ଏ ଭାଷେ ଲଜ୍ଜା ହାସେ ସୁଦାମା ଦୀର୍ଘ ଶ୍ୱାସେ
ବୋଇଲେ କେମନ୍ତ ନୁହଇ
ସଖାଙ୍କ ମନଜାଣି ଭଣିଲେ ଚକ୍ରପାଣି
ଯିବେ କି ଚନ୍ତିତ ହୃଷାଇ
ସଦନରେ
ଏକାକୀ ଅଛନ୍ତି ସୁମତି
ଅସାଧୁ ବାରଣ ଜନ୍ମତି

ଅହେ ସୁହୃଦବର କରବ ନାହିଁ ପର
କହୁ କଦମ୍ବ ରମାପତ । ୭ ।
କାମନା କଳ୍ପତରୁ କଲ୍ପ ମାଲ୍ୟ ଗଳାରୁ
ଅନନ୍ଦେ କରଣେ ବାହାର
ବଲେ ସୁହୃଦ ଗଳେ ଲମ୍ବାଇ କୁତୂହଳେ
ବୋଇଲେ ଘେନ ଉପହାର
ସଯତନେ
ସଦା ଏହାକୁ ରଖିଥିବ
ଲଭିବ ଯାହାକୁ ପାଞ୍ଚିବ
ବଲ୍ଲଭ ସଙ୍ଗତ ପାଇଁ ବଳିଲେ ମତ
ସ୍ପୃହା ଏ ପୂରଣ କରବ । ୫ ।
ଛିଣ୍ଡାଇ ସ୍ନେହ ଡୋର ଯାଉଛ ସଖା ମୋର
କହ ଅସ୍ଥିର ବେଣୁଧାରୀ
ମିଳାଇ ବକ୍ଷେ ବକ୍ଷ ଶ୍ୱେତ କମଳ ଅକ୍ଷ
ବରଷି ନୟନରୁ ବାରି
ପଚ୍ଛୁରିଲେ
ସତ୍ୟ କରହେ ଧରିଦେବ
ପୁନଶ୍ଚ କଷ୍ଟେ ଦେଖା ଦେବ
ଏହ ଯେ କେତେଦନ ତୁମ୍ଭ ଗହଣେ ଦନ
ଗଲା ମୋ— ତା ତୁଳା କ ହେବ ? । ୬ ।
ଶ୍ରୀକୃଷ୍ଣ ମନୋହାରୀ ବୃନ୍ଦ ନୟନୁ ବାରି
ମୁହିଁ କହନ୍ତି ଅସୁଥିବ
ଅମ୍ଭମାନଙ୍କ କଥା ସଖୀ ପାଶେ ସର୍ବଥା
କହବ ପର ନ କରବ
କହୁଁ କହୁଁ

ବଢ଼ିଲା ଶୋକ ଅଘଘନେ
ବଚନ ନସ୍ଫୁରେ ବଦନେ
କେବଳ ନେତ୍ର ନୀର    ପ୍ରକାଶ କଲା ଗିର
ସବୁର ଅବନୀ ଲପନେ । ୭ ।

ମିତ୍ର ମିତ୍ର ରମଣୀ    ଗଣଙ୍କୁ ସ୍ୱପ୍ରମଣି
ନୟନେ ଅଶ୍ରୁଜଳ ଭରି
ବିନୟରେ ସେଚନ    କରଣ ଏ ବଚନ
ବୋଇଲେ ଚରଣେ ଚୁମ୍ବିର
ଯହିଁ ତହିଁ
ବନ୍ଦିଲେ ମୂର୍ଦ୍ଧ ଶରଣ୍ଡିତ
ଏକଥା ଜାଣିବ ନିଶ୍ଚିତ
ମଳିନ ଗଗନରେ    ନଳିନୀ ସରୋବରେ
ସ୍ନେହ ତାଙ୍କର ସୁନିଶ୍ଚିତ । ୮ ।

ମିତ୍ରର ତାଳପତ୍ର    ନିର୍ମିତ ଥିଲ ପତ୍ର
ଦ୍ୱାରକା ଛତ୍ର ପଡ ଧରି
ବେନି ବେନି ବଦନ    କରନ୍ତି ବିଲୋକନ
ଗୃଲନ୍ତି ଜଡ଼ଜନ ପରି
ବହୁଦୂର
ଯିବାରୁ ମନ୍ଦିର ସୁନ୍ଦର
ଭକ୍ତରେ ଯୋଡ଼ି ବେନିକର—
ବିଦଗଧେ ଭୂଦେବ    କହେ ହେ ବାସୁଦେବ
ସଦନେ ଫେରନ୍ତୁ ଏଥର । ୯ ।

କେବେ ନେତ୍ର ମିଳନ    କରଣ ବେନିଜନ
ସୁନ୍ଦର ଚନ୍ଦ୍ର ମୂର୍ତ୍ତି ପରି

ନ ପ୍ରକାଶି ବାଣୀରେ    ଯାଅ ଭାସି ପାଣୀରେ
ଅଳପ ଅଳପ ଅପସରି
ଫେରି ଫେରି
ବନ୍ଧୁ, ବନ୍ଧୁ ସେ ଗୃହିଁ ଗୃହିଁ
ଗୃହଲକ୍ଷ୍ମେ ଦୃଶ୍ୟ ହେଲା ନାହିଁ
ବନ୍ଧୁହା ଦୀନବନ୍ତ    ଭବଯ୍ୟେ ବ୍ୟାକୁଳନ୍ତ
ଗଲେ ବାଣୀଙ୍କ ନିନ୍ଦା ବନ୍ଧୁ । ୧୦ ।
ଧନ୍ୟ ଧନ୍ୟ ଭୂସୁର—    କୁଳ କମଳ ସୂର
ଧନ୍ୟ ସୁଦାମା ତୋ ଜନମ
ଭକ୍ତ କୁଳ—ଅଳକ    ବିଭୂଷିତ ତିଳକ
ତୋ ନର ଶରୀର ଉତ୍ତମ
ଯେଉଁ ପଦ
ଦର୍ଶନ ନପାନ୍ତି ଶଙ୍କର
ଅମର ପତି କୁଶଙ୍କର
ତୁ ସେହି ପ୍ରଭୁ ସଖା    ପାଇଲୁ ତୋର ଦେଖା
କଳ୍ପ ତୁଟିଲା ଅମ୍ବର । ୧୧ ।
ଗାଇ ସର୍ବ ସୁମନ    ବରଷିଲେ ସୁମନ
ସୁଦାମା ମସ୍ତକେ ସୁମନେ
ସୁନାଶିର ସୁଦାମ    ଗଲେ ଦେଖି ସୁଦାମ
ଭାଳିଲା ବ୍ୟାକୁଳିତ ମନେ
ଇନ୍ଦ୍ରପଦ
ନେବ କି ମୋର ଭକ୍ତବର
ଭାଳି ଅପସରି ନିକର
ବାଳ ବିମୁଖେ ଆପେ    ଯାଇ ସୁଦାମା ପାଶେ
କପଟେ କଳ୍ପ ମାଲ୍ୟ ହରି । ୧୨ ।

ଧ୍ୟାନ ଜନ ରଞ୍ଜନ ହେ ଅଞ୍ଜନ ଗଞ୍ଜନ—
ବିରଜ ସଂକଟ ଭଞ୍ଜନ
ମୋ ହୃଦ କଞ୍ଜବନ ନବୋଦିତ ତପନ
ଜୟ ହେ ପତିତ ପାବନ
ସଂକୀର୍ତ୍ତନ
ଭବ ଏ ନାମାମୃତେ ମୁଖେ
ସୁଦାମା ଚଳେ ପଥେ ସୁଖେ
ଶ୍ରୀକୃଷ୍ଣ କଣ୍ଠ ଭୂଷ ହୋଇ ହାରେ ସନ୍ତୋଷ
ଚିନ୍ତିତ ସଙ୍ଗ ଭଙ୍ଗ ଦୁଃଖେ । ୧୩ ।
ସେ କାଳେ ମାୟାବତୀ ଭକତ ବିମୋହିନୀ
ମିଳିଲେ ଭକ୍ତବର ପାଶେ
ସବେ ନବ ଯୁବତୀ ରମ୍ଭା କି ରୂପବତୀ
ଜାତ କି ଯୋଗୀ ଯୋଗ ନାଶେ
ବଡବର
ତୂଣୀରୁ ଫୁଲ ଶର ଶ୍ରେଣି
ବାହାରୁ ଅଛନ୍ତି କି ଅଣି
ଗୁହ୍ନି ଗୁହ୍ନି ମଦନ ଫୁଲ ଶରେ କଦନ
ଭୋଗିବେ ବାରାଣସୀ ବାସୀ । ୧୪ ।
ବାଘ ଚୋଟିବା ଅସେ ବକତ ମକ୍ଷୀ ହାସେ
ତରଙ୍ଗ ଭ୍ରୂଭଙ୍ଗ କମ୍ପାଇ
ବୋଇଲେ ପାନ୍ଥ ଅଏ ତରୁ ତଳରେ ବସ
ବିଶେଷ ଭ୍ରାନ୍ତି ଅଛ ପାଇ
ପଦ୍ମମଳ
ମୃଦୁଳ ପବନ ବହଇ
ସନ୍ତାପ ସ୍ନାନସୁ ଦହଇ ॥

ଉତ୍ଫୁଲ ରସ ଗୀତ          ବାହରେ ଗାଉଛନ୍ତି
ହୃଦୟ ଉଲ୍ଲାସେ ପୂରଇ । ୧୫ ।
ଭକ୍ତ କଲେ ଉତ୍ତର          ନାହିଁ ମା ମୋତେ ଡର
ବିଶ୍ରାମ କରବାକୁ ଏଥି
ଶୁଣି 'ମା' ସମ୍ବୋଧନ          କଲେ ଅଧୋ ବଦନ
ନିଦ୍ରାବ ମାୟାବିନୀ ତଥି
କପା ଲଭ
ପଳାଇ ଇନ୍ଦ୍ରେ ଏହା ଭାଷି
ମାନସେ ବିପ୍ରଙ୍କୁ ପ୍ରଶଂସି
ନିଜ ମନ ଯୌବନ          କର ତୁଚ୍ଛ ଗିଅନ
ସ୍ୱପୁରେ ପ୍ରବେଶ ସୁହାସୀ । ୧୬ ।
ଭକ୍ତ ବାଣୀ ପରଶ—          ମଣି କର ସ୍ପରଶ
ମୋହିନୀ ବୃନ୍ଦ ତନୁ ଲୌହ
ପାଲଟିଲା କାଞ୍ଚନ          ମୋହ-ତାମସୀ ଘନ
ନାଶେ କ୍ଷ ଶୀତାଂଶୁ ଉଦୟ
ସୁଧୀ ସଙ୍ଗ
ବୁଦ୍ଧି ବର୍ଦ୍ଧନର ସରଣୀ
ଅଜ୍ଞାନ-ତାମସୀ ତରଣୀ
ସୁର ସୁର ବନ୍ଦନୀ          ନଗବର ନନ୍ଦନୀ
ଧ୍ୟାଇ ମାଧବ ଦୀନ ଭଣି । ୧୭ ।



## ନବମ ସର୍ଗ

ରାଗ—ଘଣ୍ଟା ରବ

ଏଥି ଅନ୍ତେ ହେ ସୁମନେ  ଏ ରସ ଘେନ ସୁମନେ
ଧସପଡ ବାଣୀ  ଧର୍ମଦେବ ଶୁଣି
ପଥେ ଚଳଇ ସୁଜନେ ।୧।

ବସ୍ତୁ ସ୍ବରୂପ ନୟନେ  ଝଳକ୍ଷି ଚଳୁଁ ଅୟନେ
ଦେଖିଲେ ଯନ୍ତ୍ରଣା  ଭୋଗେ ପଙ୍ଗୁ ରୋଗୀ
ଏକ ଧରଣୀ ଶୟନେ ।୨।

ସଂମାର୍ଜ୍ଜନୀ କରେ ଧରି  ଛାର ଉଗ୍ର ଚଣ୍ଡୀ ନାରୀ
ରୋଷେ ପ୍ରହାରଇ  କାନ୍ତ ମମତାକୁ
ଅନ୍ତରୁ ଅନ୍ତର କରି ।୩।

ସଦୟେ ଉକତ ବର  ଧରି ସେ ପ୍ରଚଣ୍ଡା କର
ମାରୁଛୁ କାହିଁକି  କହ ରୋଗୀଟିକି
କି ହୁଏ ସେହୁ ତୋହର ।୪।

ଶୁଣାନ ଚଣ୍ଡୀ ମୂରତୀ  ଧରି ଭ୍ରୂକ୍ଷେପ କୋପବତୀ
କଏ ତୁ ବ୍ରାହ୍ମଣ ଯା, ଯା, ମୋର ଅଗୁ
ନକର ବେଶି ଉକତ ।୫।

ଧର୍ମଇଛି ଏହା କର  ଛନ୍ଦେ ମୋତେ କୁଶକର
ଅଳ୍ପ ବୟସରେ  ସାବି ବରଷ ମୁ
ହେଉ ଅଛୁ ହରବର ।୬।

କହଁ ଏକୁ କାଳ ଫାଶ—  କର କରୁ ନାହିଁ ନାଶ
ଏହା କହୁ ପୁଣି  ରୋଷେ ପ୍ରହାରିଲା
ଭାଷି ମର୍ମନ୍ତୁଦ ଭାଷ ।୭।

ଅଧମା ପ୍ରକୃତ ନାରୀ ଭର୍ତ୍ତ୍ୟାଙ୍କୁ ଉପଗୃହୀ
ବଗୃହ ଅନ୍ତରେ ଉଛାଇଲେ ବଧେ
ଭେଦ ନୁହେ ତାହାର । ୮ ।

ଯେଉ ଜନ ସେଜଗାର ସେ ନାରୀ ମୂକୁର ପର
ନିରୁପାୟ ହେଲେ ଜଳକ ଦେଖଇ
ତାହାକୁ କୁକୁର ପର । ୯ ।

ଧନ୍ୟ ଏ ବଧିର ବଧି ତାହାକୁ ଦେଉଛି ନିଧି
ତାହାକୁ ଧୂଳିରେ ଗଡ଼ାଇ ଗଡ଼ାଇ,
ଅବଜ୍ଞୁଛି ତେଜି ସିଦ୍ଧି । ୧୦ ।

ଏ ଦୁଃଖୀ ଦୁଃଖ ନାଶିବ କଳ୍ପମାଲ୍ୟ ପ୍ରଶଂସିବ
ସେଗୀ ବେଗ ମୁକ୍ତ-କର କୃଷ୍ଣ ଦାମ
ଧର କରେ ମନାସିବ । ୧୧ ।

ସ୍ମର ଶ୍ରୀକୃଷ୍ଣ-ନାମ ସେଗୀ ଗଲେ ବରଦାମ
ଫକାଉଁ ଉଠିଲା ବୀର ପୁଂଷ ସମ
ସୁଷମାରେ ନିନ୍ଦେ କାମ । ୧୨ ।

ଶ୍ରୀକୃଷ୍ଣଙ୍କ କଣ୍ଠହାର ସେଗୀ ଗଳାରୁ ବାହାର
ହୋଇ ନଭଗତ ବସ୍ଜିଲା ଯାଇଁ
ଘନ ସୁନ୍ଦର ହୃଦର । ୧୩ ।

ତହୁଁ ଉଡ଼ିଲ ବେଗରେ ଯାଇ ଅବନ୍ତୀ ନଗରେ
ଦେଖିଲେ ସ୍ୱବାସ ସ୍ଥଳେ ହର୍ମ୍ୟ ବର
ବସନ୍ତେ ଶିଳ୍ପି କଳ୍ପରେ । ୧୪ ।

ମନେ କଳ୍ପିଲେ ସୁମତି ହୋଇ ଗଲା କି କୁମତି
ଦେଉ ଧନେଶ୍ୱର ତା ମନ ବୁଝଇ
ଜନକ ଏଥେ ବସନ୍ତ । ୧୫ ।

ଅବା ବସ୍ତ୍ର ବଡ଼ମ୍ବନ ଭକତ କରୁ ଚିନ୍ତନ
ମାଧବ ଦହଇ ନଗରେଶ୍ୱରଙ୍କ
ଅଳାଏ କଲେ କଥନ । ୧୬ ।



## ଦଶମ ସର୍ଗ

ରାଗ—କେଦାର କାମୋଦ

ବ୍ରାହ୍ମଣ ଅନୁସ୍ମୃ ସରସୀ—ସାରସ
ଲୋଲୁପ ବୈଭବ କାନନ ଦରଶ । ୧ ।
ବ୍ୟାକୁଳ ଅନ୍ତରେ ନଗରୀ ଚତ୍ୱରେ
ବିହରୁ ସୁଦାମ ଦେ ଅଳୀ ସତ୍ୱରେ । ୨ ।
ଭାଷିଲେ ବାଳୀଣେ ଅସିଛୁ ବାଳୀଷେ
ଗବାକ୍ଷେ ବଲ୍ଲେକ ସୁମନ୍ତ ହରଷେ । ୩ ।
କନକ କୁମ୍ଭରେ ଧବଳ ସଲିଳ
ଧୋଇଲେ ଜୀବେଶ ଶ୍ରୀପଦ-କମଳ । ୪ ।
ଚରଣେ ପ୍ରଣମି ଆଦରେ ବସାଇ
ଭାଷନ୍ତି ସକଳ ବୃତ୍ତାନ୍ତ ରସାଇ । ୫ ।
କମଳ ପଲ୍ଲବେ କମଳ ଯେସନ
ସୁଦାମ ଶ୍ରବଣେ ସେ ବାଣୀ ତେସନ । ୬ ।
ଅନ୍ତରେ ମନ୍ତ୍ର ହୋଇଛନ୍ତି ସୁମନ୍ତ
ଲଭିଛନ୍ତି ସମ୍ପଦ ହୋଇଣ କୁମନ୍ତ । ୭ ।
ବୁଝିଣ ସୁମନ୍ତ ଜୀବେଶ ସଶସ୍ତୁ
ଭାଷିଲେ ସମସ୍ତ ପୂରବ ବୃତ୍ତାନ୍ତ । ୮ ।
ହାନୁକରେ ଯଥା ଲୁଟଇ ତାମସୀ
ସରସୀରୁହ ବନ ଉଡଙ୍କ ବିକାଶ । ୯ ।

ଯୋଷା ଭାବେ ବିପ୍ର ସନ୍ଦେହ ତୁଟିଲା
ବଦନ କମଳେ କୁମୁଦ ଫୁଟିଲା । ୧୦ ।
ରମା-ବଲ୍ଲଭଙ୍କୁ ପ୍ରଶଂସି ଅନ୍ତରେ
କହିଲେ କାନ୍ତ ଅତି ଆନନ୍ଦରେ । ୧୧ ।

କମଳ ପଲ୍ଲବେ ସଲିଳ ଯେସନ
ମଣନ୍ତି ଦମ୍ପତି ସମ୍ପତ୍ତି ତେସନ । ୧୨ ।
ବିଶ୍ୱପତିଙ୍କର ଏହି ଧନାଗାର
ସମ୍ପାଦନ ମାତ୍ର ଅମ୍ଭ ପରେ ଭାର । ୧୩ ।

ବନ୍ଧୁ ଦତ୍ତ ଧନେ ସର୍ବେ ଅଧିକାରୀ
ଅନିତ୍ୟ ସମ୍ପଦ ନୁହଇ କାହାରି । ୧୪ ।
ଏହା ଭାବି ଅକାତରେ ଅତଶୟ
ଦାନ କଲେ ଧନ ଲଭେ ନୋହେ କ୍ଷୟ । ୧୫ ।

କୃଷ୍ଣ ପୟୋଧର ବରନ ଭଜନ
କୃଷ୍ଣ ପଦ ଦ୍ୱନ୍ଦ୍ୱ ଶରୀର ଭୂଷଣ— । ୧୬ ।
କୃଷ୍ଣ ପ୍ରତମୂର୍ତ୍ତି ନିକାଳ ଅର୍ଚ୍ଚନ
କୃଷ୍ଣ ଗୀତ ଗାଥା କରନ୍ତି ରଚନ । ୧୭ ।

ଏହି ରୂପେ ଦୁହେଁ କାଟୁଥାନ୍ତି କାଳ
ତେଜି ଷଡ଼ ଅରି ସଂସାର ଜଞ୍ଜାଳ । ୧୮ ।
ଶରତ ଅବନୀ ପବନ ଶୋଭନ
ଥିସି କଳ୍ପ ବେଳି ତନୁରେ ସଦନ । ୧୯ ।

କାଶ ପୁଷ୍ପ ଶୋଭା ପଳିତ କୁନ୍ତଳ
ରସ ହୀନ ଗତ-ପଥ ପରିମଳ । ୨୦ ।
ଉଦିତ ଅଗସ୍ତ୍ୟ ନକ୍ଷତ୍ର ଉଦୟ—
ହେଲୁ, ଅନାବିଳ ସଲିଳ ହୃଦୟ । ୨୧ ।

ପାପ-ପଙ୍କେ ପଡ଼ିବାକୁ ନାହିଁ ଡ଼ର
ଧରିଲି ଜୀବନ-ତରଣୀ ସୁନ୍ଦର । ୨୨ ।
ହୃଦୟରେ କୃଷ୍ଣନାମ ଡୋର ଧରି
ଅନାରତ କ୍ରୀଡ଼ା ଅତଳରେ ଅସି । ୨୩ ।

ଶରଦସ୍ତ ଅମ୍ବର ବଙ୍କିମା ବରଣ—
ବସନ ଧରିଲି ଅତି ସୁଶୋଭନ । ୨୪ ।
ଶୁଭ୍ର ରୁଚିକରେ ଶୋଭିଲା ଧରଣୀ
ଅଦ୍ଭୁତ ଅବନୀ ରତ୍ନମା ଚରଣୀ । ୨୫ ।

ପୂତ ଧୂମ୍ର ହୃଦେ କୃପାଙ୍କ ସଙ୍ଗତ
ସ୍ମୃତି ଶୋଭା ଯଥା ଭକ୍ତଙ୍କ ରଜତ । ୨୬ ।
ସମସ୍ତାଂଶ ପକ୍ୱ ଧାନ୍ୟ କ୍ଷେତ୍ର ଶତ
ଦକ୍ଷ ଦମ୍ପତିଙ୍କ ମଣ୍ଡିଲ ବିଚିତ୍ର । ୨୭ ।

ଦିନତ ବଧିରେ ହୋଇଗଲା କ୍ଷୀଣ
ଚନ୍ଦ୍ର! ଘନ ଘଷି ହୋଇଗଲା ମ୍ଳାନ । ୨୮ ।
ପ୍ରବୃତ୍ତିର ଶିର ହୋଇ ଅବନମିତ
ବନ୍ଧୁ ବନା ବଶେ ସବୁ ଅନ୍ତସ୍ଥିତ । ୨୯ ।

ବାନ୍ଧିଲି ତୁଳସୀ ମାଳା ମଣ୍ଡି ଭର
ସକଳ କାମନା ବର୍ଜନ କର । ୩୦ ।
ନେଇ ପରେ ପର ଭସ୍ମ ଅଚ୍ଛାଦନ
ନିର୍ମଳ ଧରିଲେ ଶ୍ରୀ ମଧୁସୂଦନ । ୩୧ ।

ସୁଖେ କାଳକାଟ ନଶ୍ୱର ଜୀବନେ
ଯଥା କାଳେ ଗଲେ ଅମର ଭୁବନେ । ୩୨ ।
ନାହାନ୍ତି ସୁମନ୍ତ ନାହାନ୍ତି ସୁଦାମ..
ମାତ୍ର ସଜୀବତ ଅଛି ତାଙ୍କ ନାମ । ୩୩ ।

ରହୁଥିବ ତାହା ଯାବତ ଭାସ୍କର
ଶଶୀ ତାରା ମଣ୍ଡ଼ି ଥିବେ ଅନମ୍ବର । ୩୪ ।
ବୃଥା ଧନ ଗର୍ବ ବିଳାସ ସମସ୍ତ
ସତ୍ୟ ଦୟା ଭକ୍ତି ଅନ୍ତ୍ରମର ଗତ । ୩୫ ।
ଧନ୍ୟ ଅହେ ଭକ୍ତ କୁଳ ଶିରୋମଣି
ଧନ୍ୟ ହେ ସୁମତି ସତୀଦା ସରଣୀ । ୩୬ ।
ଭାରତରେ ତୁମ୍ଭେ ପବିତ୍ର ଦମ୍ପତି
ଚଳିତ ବ୍ରତୀଙ୍କ ନୟନ ସମ୍ପତ୍ତି । ୩୭ ।
ଭାରତରେ ହୋଇ ଅଛ ଥରେ ଜାତ
ପବିତ୍ର ପ୍ରଣୟ ଭକ୍ତି ବର ଖ୍ୟାତ । ୩୮ ।
ଜୟ ଜୟ ପ୍ରଭୁ କମଳା ରମଣ
ଶାରଙ୍ଗ କୌସ୍ତୁଭ ରଥାଙ୍ଗ ଧାରଣ । ୩୯ ।
ଯେପରି ତୁମ୍ଭର ସୁଦାମ ସୁମତି
ପଦ ଅରଚନେ ଦେଇଥିଲେ ମତି । ୪୦ ।
ସେହ୍ନ ପରି ତବ ପୟର ମନ୍ଦରେ
ମୋ ବାଳୀଶ ମତି ରଖ ଅ ବନ୍ଦୀରେ । ୪୧ ।
ନଗେନ୍ଦ୍ରନନ୍ଦନୀ ପୟର ଯୁଗଳ
ଧ୍ୟାନ ମୋର କବି ଜୀବନ ସମ୍ବଳ । ୪୨ ।
ଅହରହ ତାଙ୍କ ନାମ ରଟି ରଟି
ବରଜ ମାଧବ ଏହୁ ଭବ ତଟି । ୪୩ ।
ଏତିକି ମାତର ତାହାର କାମନା
ବସ ଭୟ ଦାତ୍ରୀ ! ପୂରୁ ସେ ବାସନା । ୪୪ ।

ସ ମା ପ୍ତ

କଟକ ମନମୋହନ ପ୍ରେସରେ ଶ୍ରୀ ମୋହନ ଚରଣ ଦାସଙ୍କ ଦ୍ୱାରା
ମୁଦ୍ରିତ । ୧୯୩୮ ।